# ପଡ଼ୋଶୀ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର

ଓଡିଶା, ଭୁବନେଶ୍ୱର

# ପଡ଼ୋଶୀ

ଲେଖକ ଡକ୍ଟର ହେମନ୍ତ କୁମାର ଦାସ
ପ୍ରଥମ ପ୍ରକାଶ ୨୦୦୦
ପ୍ରକାଶକ ଶ୍ରୀ ପାର୍ଥସାରଥି ଗୁହ, ଆଇ.ଏ.ଏସ୍
ନିର୍ଦ୍ଦେଶକ, **ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା**
ଜନଶିକ୍ଷା ଭବନ, ୟୁନିଟ୍ - ୫
ଭୁବନେଶ୍ୱର - ୭୫୧ ୦୦୧
ମୁଦ୍ରଣ ସଂଖ୍ୟା ଦୁଇ ହଜାର
ପ୍ରକାଶନ ସଂଖ୍ୟା : ଏସ୍. ଆର୍. ସି. -୨୯୬-୨/୨୦୦୦
ମୁଦ୍ରଣ ଭୋଳାନାଥ ପ୍ରେସ୍
ବମିଖାଲ୍, ଭୁବନେଶ୍ୱର
ମୂଲ୍ୟ ଟ. ୫.୦୦ (ପାଞ୍ଚ ଟଙ୍କା ମାତ୍ର)

# PADOSHEE

Written by **Dr. Hemanta Kumar Das**
Ist Edition 2000
Published by Shri Parthasarathi Guha, I.A.S.
Director, **State Resource Centre for Adult Education, Orissa**
Janasiksha Bhavan, Unit - V,
Bhubaneswar - 751 001
No. of Copies Printed 2000
Publication No. SRC - 295-2/2000
Printed at Bholanath Press
Bomikhal, Bhubaneswar-10
Price Rs. 5.00 (Rupees five only)

# ପ୍ରଥମ ଦୃଶ୍ୟ

(ସମୟ-ରାତି । ସ୍ଥାନ ଓଡ଼ିଶାର ଯେକୌଣସି ଏକ ଗାଁଆ । ଅରକ୍ଷିତ- ସେଇ ଗାଁର ଜଣେ ମଧ୍ୟବିତ୍ତ ଚାଷୀ । ବର୍ତ୍ତମାନ ସେ ନିଜ ଶୋଇବାଘରେ ବସି ପାନ ଭାଙ୍ଗୁଛନ୍ତି । ଗୁଆ କାଟିବାର ଠକ୍ ଠକ୍ ଶବ୍ଦ ଶୁଣାଯାଉଛି । ରହି ରହି ଶୁଣାଯାଉଛି ଗୋଟିଏ କୁକୁରର ବିକଳ ଚିତ୍କାର । ଅରକ୍ଷିତ ସେ ଆଡ଼େ ମନ ନ ଦେଇ ନିଜ ପତ୍ନୀକୁ ଡାକ ଛାଡିଲେ)

ଅରକ୍ଷିତ — ହଇଓ, ଶୁଣୁଚ ...

ରାଧା — (ଦୂରରୁ) ରୋଷେଇ ଘର କାମ ସାରି ଯାଉଚି...

ଅର — ଆଗ ଶୁଣିଯାଆ - କାମ କ'ଣ କୁଆଡ଼େ ପଳୋଉଚି ? (କିଛି ଉତ୍ତର ନ ପାଇ) ଯେତେବେଳେ ଗୋଟାଏ କଥା କହିବାକୁ ଖୋଜିଲ, କ'ଣ ନା କାମ ଚାଲିଚି ... (ବିରକ୍ତି) ଆମର ଏଠି କି ପାଲା ଯେ ନିତି ଚାଲୁଚି, ସେ କଥା କିଏ କହିବ ?

ରାଧା — (କହି କହି ଆସିଲେ) କହୁଚି ପରା, ହାତର ପାଇଟିଟା ଛିଣ୍ଡେଇ ଦେଇ ଯାଉଛି ବେଲି । ଟିକିଏ ତର ସହୁନାଇ ତମର ?

ଅର — ହଇଓ ବୁଲାବୋଉ ...

ରାଧା — ମଲା, ମୋ ଆଡ଼କୁ ଏମିତି ଡବଡବ କରି ଅନେଇଚ କ'ଣ ବା ? ତେମେ ତ ତମର ଖାଇ ପିଇ ଆଇଲ, ବିଛଣା ପାରିଦେଇଛି... ପାନ ଭାଙ୍ଗି ଦେଇଛି - ଆଉ କଣଟା ବାକି ରହିଲା ଯେ ରାତି ଅଧରେ ଏତେ ପାଟିତୁଣ୍ଡ କରୁଚ ।

ଅର — ଏଁ .... ରାତି ଅଧରେ ମୁଁ ପାଟି କରୁଚି ?

ରାଧା		ନାଇଁ ମୁଁ କରୁଚି ? ମୋରି ପାଟିତ ଏ ଘରେ ସମସ୍ତଙ୍କୁ ଶୁଗୁଚି । କହିଲେ କହିବେ କ'ଣ ନା ଟୋକେଇ ପାଖରେ କୁଣେଇଟାଏ, ତୁଛାରେ ବୋଲିବେ ତୁଣ୍ଡେଇ ଟାଏ ...

ଅର		ଆରେ ଏଇଟା ତ ବଡ଼ ମୁସ୍‌କିଲି କଥା... ମୁଁ ତମକୁ କେତେବେଳେ କଳେହୀ ବୋଲି କହିଲି ଯେ ..

ରାଧା		ଗୋବର ଗୋଟେଇବାକୁ ନକହି ଟୋକେଇ ଧରେଇ ଦେଇଚ । ଦେ ଛାଡମ ... ମୋର ତ ଏଇଆ ଶୁଣି ଶୁଣି କାଳକ କଟିଲା... ଆଉ ଅଇନେ... କହିବଟି, କାଇଁକି ଏତେ ଉଠିଆ ଡାକ ପଡିଥେଲା ?

ଅର		ଆଉ ଅଛି ଯେ କହିବି ?

ରାଧା		ନାଇଁ ! ମୁଁ ଜାଣେ ପରା... ସମସ୍ତଙ୍କ ପେଇଁ ସବୁ ହଉଥବ । ଖାଲି ମୋରି ବେଳକୁ ସବୁ ... (କୁକୁର କାନ୍ଦଣା ଶୁଣି) ହେଇତି ଶୁଗୁଚିଟି ।

ଅର		ନାଇଁ .... ମତେ କିଛି ଶୁଗୁନାଇଁ ...

ରାଧା		ରାତି ହେଲାତ ଦିନ୍ କୁକୁରଟା କାନ୍ଦିଲା-

ଅର		ଆହେ, ତା' କୁକୁର ତା' ଘରେ କାନ୍ଦିଲା କି ହସିଲା, ସେତିକି ତମ ମୁଣ୍ଡ କାଇଁ ବଥୋଉଚି ?

ରାଧା		କହନ୍ତି, କୁକୁର କାନ୍ଦିଲେ ଘର ମୁରବୀକି ହାନି । ନାଇଲୋ ମା- ମୋର ପିଲାଛୁଆ ଘର । ମୁଁ ତ ଆଉ ନାହିରେ ତେଲ ପକେଇ ଶୋଇ ପାରିବି ନାହିଁ (ରହି) ତେମେ..

ଅର		କି ଅଭିଲା କଥା ... ଇଥେରେ ମୁଁ କ'ଣ କରିବି ? ଏଁ ? ନଳାପାଣି ଗୁରା ଆମ ବାରିକି ମାଡ଼ିଆଉଚି ବୋଲି କହିଲାରୁ ଡମା ପରା ମତେ କାଲି ଠେଙ୍ଗା ଦେଖେଇ ଦେଲା.... ଆଉ ଆଜି ମୁଁ କ'ଣ

ରାତି ଅଧରେ ମାଡ଼ ଖାଇବାକୁ ତା' ଘରକୁ ଯିବି ? ନାଇଁରେ ବାବା ...

ରାଧା　କୋଉ ପୁରୁଷରୁ ତମର ଚାଲକୁ ଚାଳ ନାଗିଚି । ଏ ଘରେ ସୋରିଷ ଫୁଟିଲେ ସେ ଘରୁକୁ ବାସନା ଯାଉଚି । ଏମିତି ପାଟି କଥାରେ କ'ଣ କିଏ କାହାକୁ ବାଡ଼େଇ ପକୋଉଚି ...

ଅର　କାଲି ଠେଙ୍ଗା ଦେଖେଇ ଥେଲା, ଆଜି ଯଦି କୁରାଢ଼ି କଟାଡିବ ? ତେମେ ତାକୁ ଜାଣିନା ...

ରାଧା　ମୋର ଜାଣିବା ଦରକାର ନାଇଁ । ମୋର ବି ଗୋଟିଏ କଥା ଶୁଣ- ଏମିତି କୁକୁର ଭୁକିଲେ ମୁଁ ଶୋଇ ପାରିବି ନାଇଁ ... ତେମେ ଯିବ ... ନା ମୁଁ ଯିବି ?

ଅର　(ବ୍ୟସ୍ତ) ତେମେ ଯିବ ସେଇ ରାଢ଼ଟା ପାଖୁକୁ ।

ରାଧା　ତମେ ତ ମରଦ ହେଇ ଘରକଣରେ ବସିଥିବ - ମୁଁ ଯିବିନି ଆଉ କିଏ ଯିବ । ଦେଖ ମୁଁ କ'ଣ କରୁଚି... (କହୁ କହୁ ଦୂରେଇ ଗଲେ)

ଅର　(ବ୍ୟସ୍ତ ହୋଇ) ହେ - ବୁଲାବୋଉ... ଶୁଣୁଚି ... ଆରେ ମୋ କଥା ଶୁଣ .. ତେମେ ଯାଆନା ... ମୁଁ ପଛେ .. (କହୁ କହୁ ସେ ବି ଦୂରକୁ ଚାଲିଗଲେ)

# ୨ୟ ଦୃଶ୍ୟ

(ଓମା ଘରର ଦାଣ୍ଡ । ରାଧା ପାହାଚ ଉପରକୁ ଉଠି କବାଟ ବାଡେଇ ଡାକିବାକୁ ଲାଗିଲା ... ଦୂରରୁ 'ବୁଲାବୋଉ ଶୁଣ' ଇତ୍ୟାଦି ଶୁଭୁଥାଏ ।)

ରାଧା ଆଲୋ ନେତ, ନେତ ... ଆଲୋ କ'ଣ ଶୋଇଲଣି ନା କ'ଣ ବା ? ରଘୁ ... ଆରେ ହେ ରଘୁ...

ଅର (ପହଞ୍ଚି) ମୋ ସାନ କୁହାମାନ ବୁଲାବୋଉ । ରାତି ଅଧରେ ଆଉ ଏ ଫାର୍ସ ନଗାନା... ତମେ ଘରକୁ ଚାଲିଲ... ମାଇକିନିଆଟା ହୋଇ-

ରାଧା ସତେ ? ଦେଖିବ ରୁହ ମାଇକିନିଆର କରାମତି - ହେଇଟି, ଆଜି ଗୋଟାଏ କିନାରା ନ କରି ମୁଁ ଏଠୁ ଯାଉନାଇଁ...

ଅର (ବୁଝେଇ) ହଉ ହଉ, ତମେ ଘରକୁ ଯାଅ ... ମୁଁ ପଛେ ଓମାକୁ କହୁଚି (ଏତିକି ବେଳେ ଦାଣ୍ଡ କବାଟ ଖୋଲି ଓମା ପରିଡା ଦେଖାପଡ଼ିଲେ, ତାଙ୍କ ପଛେ ପଛେ ଡିବିରି ଧରି ତାଙ୍କ ଘର ମଣିଷ ନେତ)

ଓମା (ଆଶ୍ଚର୍ଯ୍ୟରେ) କଥା କ'ଣ ଅକ୍ଷିଭାଇ ? ରାତି ଅଧରେ ଦି'ପରାଣୀ ମୋ ଦାଣ୍ଡରେ ... ଘରେ କ'ଣ କାହାର...

ଅର ଆରେ ନାଇଁ ହୋ.. ଘରେ କାଇଁ କାହାର କଣ ହବ ?

ରାଧା ତେମେ ରହ ... ମୁଁ କହୁଚି... ଶୁଣ ଓମା, ମୁଁ ପିଲାଛୁଆ ନେଇ ଘର କରୁଚି ...

ଓମା ମଲା ତମର ଖାଲି ପିଲାଛୁଆ । ଆଉ ଗାଁରେ ସମିତେ ବାଞ୍ଝ, ଆଣ୍ଠୁକୁରା ...

| | |
|---|---|
| ଅର | ମୁଁ ମନା କରୁଥେଲି (ଦାନ୍ତରଗଡ଼ି) ପାଇଲୁ ତ ଏଥର ? |
| ଡମା | ଆଉ, ତେମେ ସେମିତି କଥା କହୁଚ ! କଥାଟା କ'ଣ ନ କହି ରାତି ଅଧରେ କ'ଣନା ପିଲାଛୁଆ... ନେତ ଚାଲିବୁଟି । ମଣିଷ କରେ ଶୁଅନ୍ତାଣି ... |
| ରାଧା | ମୋ କଥା ଟିକିଏ ଶୁଣ ! (ରହି ... କୁକୁର କାନ୍ଦଣା ଆଡ଼େ... ଠାରି) ଶୁଗୁଚି ଟି ? |
| ଡମା | କ'ଣ ଶୁଗୁଚି ? ଏଁ ? |
| ନେତ | (ଅନୁଚ୍ଚ କଣ୍ଠରେ) ଅପା ଏଇ କୁକୁର କଥା କହୁଚେନି ... |
| ଡମା | କୁକୁର ? ଓ ଆମ ବାଘା.. ଗାଁରେ ହୁରୁଛୁର କଲା ବେଲି ତାକୁ ଏବେ ବାନ୍ଧି ରଖୁଚି... ତମର ତ ସିଏ କିଛି କ୍ଷିତି କରିନେଇଁ ... |
| ରାଧା | କୁକୁର କାନ୍ଦଣା ଘରର ମୁରବୀଙ୍କି କେତେ ହାନି, ତା' ତେମେ ଜାଣିନା ଡମା... କାନ ପାଖରେ ଅହୋରାତ୍ର କୁକୁରଟା ବୋବେଇଲେ, କିଏ କେମିତି ଶୋଇବ କହିଲ ? |
| ଡମା | ଆରେ ଇଏତ ଆଛା ଝାମେଲା... ତେମେ କ'ଣ ମତେ ଏ ଗାଁରେ ଆଉ ରଖେଇ ଦବ ନାଇଁ ? କାଲି ସେମିତି ଆସି ଝଟାପଟା କଜିଆ ନଗେଇ ଗଲ, କ'ଣନା ଆମ ନଳାପାଣି ତମ ବାରିରେ ପଉଚି... ସତେ ଯେମିତି ପାଣି ଆଜି ପଶିଲା... ଆଜି ଆସି କହୁଚ କଣନା... କୁକୁର ଭୋକୁଚି... |
| | ମୁଁ କ'ଣ କାହାର ଖାଏ ନା ଧାରେ ବା... ମୋ କୁକୁର ମୋ ଘରେ ଭୁକିଲେ, ତମର କ'ଣ ଯାଏ ଆସେ ହୋ ? |
| ନେତ | ଅପାତ କିଛି ନାକେରା କଥା କହୁ ନାହାନ୍ତି । ସତତ, କୁକୁରଟା ଏମିତି କାନ୍ଦିଲେ, କାହାକୁ ଭଲ ଲାଗିବ ? |

ଉମା	ଆଉ ତେବେ କ'ଣ ମୁଁ ଯାଇ କୁକୁର ପାଖରେ ହାତ ଯୋଡ଼ି ନେହୁରା ହେବି ! ପଶୁ ଜନ୍ତୁ, ଭୁକି ଦେଲା ଟିକିଏ... କୋଉ ନାଟ-ସାହାବଙ୍କୁ ଯେବେ ନିଦ ନହେଲା... ତ ମୁଁ କ'ଣ କରିବି ?

ଅର	(ପ୍ରତିବାଦ) ଉମା...

ରାଧା	ତେମେ ଚୁପ୍ ରହ... ମୁଁ କହୁଚି... ଦେଖ ଉ଼ମା, ମୁଁ ଖାଲି ମୋରି ପେଇଁ କହୁନାଇଁ... ତମର ବି ତ ପିଲାଛୁଆ ଅଛନ୍ତି ।

ଉମା	(ତାଚ୍ଛଲ୍ୟ) ତାଙ୍କରି କଥା ଭାବି, ତେବେ ତେମେ ରାତି ଅଧରେ ଦୋଉଡ଼ି ଆଇଚ, ନୁହେଁ... ଦି' ଦିନ ତଲେ ପରା ରଘୁଆ... ତମ ଗେଲବସର ପୁଅ ଦିହରେ ଟିପ ଛୁଏଁଇ ଦେଇଥେଲା ବୋଲି ବଉଁଶଯାକ କାମୁଡିବାକୁ ଦଉଡ଼ି ଆଇଥେଲ ! ଆଉ ଏଇନେ ଦରଦ ଉଛୁଳି ପଡୁଚି, ନାଇଁ ?

ରାଧା	ରଘୁ କଥା କହିବାକୁ ସେଦିନ ମୁଁ କାଇଁ ଆଇଥେଲି, ସେ କଥା ତେମେ ଜାଣ, ମୁଁ ବି ଜାଣେ । ଛାଡ଼ ସେ କଥା... କୁକୁର କଥା କ'ଣ କରିବ ?

ନେତ	ତେମେ ଯା' ଅପା... ମୁଁ ରଘୁଆକୁ କହୁଚି... ତାକୁ ଶୀତ ହଉଚି କି କ'ଣ ? ଅଖାପଟେ ନେଇ ତାକୁ ଘୋରେଇ ଦେଇ ଆସୁ କି ନଡ଼ା ଦି'ବିଡ଼ା ପକେଇ ଦଉ...

ଉମା	(ରୁକ୍ଷ କଣ୍ଠରେ) କିଛି କରିବା ଦରକାର ନାଇଁ... କୁକୁର ମୋର । ମୋର ଯେମିତି ଇଚ୍ଛା ହବ, ସେମିତି ତାକୁ ରଖିବି... ତେମେ ତମର ଯାହା କରିବ କର... ଚାଲେ ନେତ... ଚାଲିବୁଟି... ରାତି ଅଧରେ ନାଗିଚି ଗୋଟାଏ ଫାର୍ଶ... (କବାଟ ଧଡ଼ କରି ବନ୍ଦ ହେବାର ଶବ୍ଦ)

# ୩ୟ ଦୃଶ୍ୟ

(ଗାଁ ମୁଣ୍ଡ ଚଉପାଢ଼ୀ । ସମୟ ଅପରାହ୍ନ । ପ୍ରକାଣ୍ଡ ବରଗଛଟିଏ ବେଦୀ ଉପରକୁ ଘୋଡ଼ାଇରଖିଛି । ଗଛରୁ ଶୁଣାଯାଉଚି କେତେଜାତିର ଚଢ଼େଇଙ୍କର କିଚିରି ମିଚିରି । ବେଦୀ ଉପରେ ବସିଚନ୍ତି ଉମା ଆଉ ମଧୁ ମିଶ୍ରେ)

ଉମା (ଉତ୍ତେଜିତ ହୋଇ) କେତେ ଦିନଯାଏ ଏ ଫାରସ୍ ଚାଲିବ ମୁଁ ଦେଖିବି । ଆରେ - ଇଏ ଢ଼ିଙ୍କିକି କାଠ ବେଲି ମନେ କରିଛନ୍ତି ପରା...

ମଧୁ କଥାଟାକୁ ଟିକିଏ ପରତାଳ କରି ଦେଖ୍ ପରିଡ଼ା ପୁଅ । ଆହେ ମୋ ପିଢ଼ାରେ ତ କଖାରୁ ଫଳିଚି... ତୋ' ତଣ୍ଟି କାଇଁକି ଦରଜ ହଉଚି ? ଆଏଁ ?

ଉମା ନାଇଁ, ତେମେ ସେ ଅର୍ଖିତିଆଟାର ସାହସକୁ ଦେଖ... ମୋ ଘରେ ମୁଁ କ'ଣ କଲି, କାହାକୁ କେମିତି ରଖିଲି... ସେଥିପେଇଁ ତୋ' ମୁଣ୍ଡ କାଇଁ ବଥଉଚି ? ସାଙ୍ଗକୁ ପୁଣି ଦୁଆ ଦଉଚି ମାଇପ... ମନ ହଉଥାଏ, ଗୋଟିଏ ମୁଥରେ ତା' ଘଇତା ପଣିଆ ଛଡାଇ ଦେଇଥାଆନ୍ତି ।

ମଧୁ (ବାଧା) ହାଁ... ହାଁ... ଜମା ସେ ଭୁଲ୍ କରିବୁ ନାଇଁ ପୁଅ... ସେମାନେ ତ ଏମିତି ଗୋଟିଏ ମଉକାକୁ ଅନେଇ ବସିଛନ୍ତି । ଗାଉଁ କିନା ମାଡ଼ିବସିବେ...

ଉମା କ'ଣ ତେବେ କରିବି ? ନେତର ଶାଢ଼ୀଖଣ୍ଡେ ଗୁଡ଼େଇ ହୋଇ କବାଟ କଣରେ ବସିବି ?

ମଧୁ ଆରେ ନାଇଁ ହେ - ଅର୍ଖିତିଆର ମୃତ୍ୟୁବାଣ ଆମ ହାତକୁ ଚାଲି ଆସିବ - ଆସିଗଲାଣି ବୋଲିଜାଣ । ତୁ ଖାଲି ଠିଆ ହୋଇ ମଜା ଦେଖୁଥା...

ଉମା	କ'ଣ କହିବି ନନା, କାଲି ରାତିରେ ହଳକ ଯାକ ମୋ ଉପରେ ଚଢ଼ୋଉ କରି ସେ ଯୋଉ ତୁମ୍ଭି ତୋଫାନ... ! ମନହଉଥାଏ ଡାକିଦବାକୁ ହେ ପୃଥ୍ୱୀ, ତୁ ଦିଫାଳ ହେଇଯା... ମୁଁ ତା' ଭିତରେ ପଶିଯାଏ...

ମଧୁ	କିରେ ବାପା, ଇଏ କି କଥା ? ସେଇ ଏକା କ'ଣ ଦଶମାସିଆ, ତମେ ଗୁରା ଛ ମାସିଆକିରେ ? ରଇଥାରେ ପୁଅ, ତୋ ଷେଣ୍ଡ ପଣିଆ ଯେମନ୍ତ ଏଥର ଛଡ଼ାଇ ନ ଦେଇଛି ତେବେ ମୋ ନାଁରେ କୁତ୍ତା ପାଳିବୁ...

ଉମା	ନାଇଁ ନନା, ତେମେ ଆ'ର ଗୋଟାଏ କିନାରା କର... ନହେଲେ -

ମଧୁ	ତତେ ଯାହା ଯାହା କରିବାକୁ କହିଚି... ତୁ କଲୁଣି ଭଲା ?

ଉମା	କଲି ନାଇଁ କେମିତି ? ବାଲିଆ ପାଟ ଜମି... ହିଡକୁ ମୋ ପଟରୁ ହାଣି ହାଣି ଏମିତି କରି ଦେଲିଣି ଯେ... ଏ ପଟରୁ ଅନେଇଲେ ସେପଟର ମୁହଁ ଦୁଶିବ ।

ମଧୁ	ସାବାସ୍, ଇଏ ହେଲା ପହିଲି ପାନ, ସେଇଠୁ ?

ଉମା	କେଞ୍ଚା କେଞ୍ଚ୍ କରି ଇଜ୍‌ମାଇଲି ନାଳଟାକୁ ଏମିତି କରିଦେଇଚି... ଏଇନେ ନଳା ପାଣି ଯାକ ସବୁ ତାରି ପଟେ...

ମଧୁ	ହେଇଗଲା... ଦି'ନମ୍ୱର ପାନ ବି ଚଢ଼େଇ ଦେଲୁ, ସେଇଠୁ ?

ଉମା	ଆହେ କ'ଣ ସେଇଠୁ ସେଇଠୁ ହଉଚ ବା ? ନଳା କଥାରୁ ପରା:. ଘଇତା ଠେଙ୍ଗା ଉଞ୍ଚେଇ ମାଡ଼ି ଆଇଲା ବେଳକୁ ମାଇପିଟା କୋଉଠି ଥିଲା, ଦଉଡ଼ି ଆସି ଆଗେରେ ଠିଆ ହେଇଗଲା ....

ମଧୁ	ଆରେ ତୁ ସେମିତି ବ୍ରିକତ କାଇଁକି ହଉଚୁ ? ଓଷଦ ଯେତେବେଳେ ପଡ଼ିଲାଣି, ତା' କାମ ବଳେ ଦେଖେଇବ... ହେଲେ ସମୟ ତ ପୁଣି ନାଗିବ.. ନା ନାଇଁ ?

ଉମା		କାଲିକା କଥା ତ ତମକୁ କହିଲି ... ମୋ କୁକୁର ... ମୋ ବାରିରେ ଭୁକିଲା... ତୋ' ଛାତି କାହିଁକି କରତି ହେଇଗଲା ? ଆଏଁ ?

ମଧୁ		ଆରେ ତୁ ବୁଝୁନୁ ପୁଅ... ସହିପାରୁ ନାହାନ୍ତି ପରା... କଣ୍ଟା ବାଡ଼ରେ କାନି ଛୁଆଇଁ ଦେଇ ଝଗଡ଼ା କରିବାର ମତଲପ୍ ଇଏ... ଖାଲି ତୁ ଟିକିଏ ସତାର କରି ଯା...

ଉମା		କେତେ ଆଉ ସତାର କରିବି ?

ମଧୁ		ଅମିନ ବାବୁଟା ଆସିଯାଉ... ଜାଣିଲୁ... ତା' ସାଙ୍ଗରେ ମୋର କଥା ବାରତା ହେଇଯାଇଚି... ଇଲ୍‌ମାଇଲି ଜମିଟାକୁ ମପେଇ ଦବା... କଡ଼ିକି ନେଇ ତା' ବାରି ଅଧାରେ ଯଦି ନ ପକେଇଚି... ତ ତୁ ଦେଖିବୁ...

ଉମା		ତମକୁ ଆଉ କ'ଣ କହିବି ନନା ! ଆପଣା ସୁନା ତ ଭେଣ୍ଡି ... ମୁଁ ଯେତେ ବାଡେଇ ପିଟି ହେଲେ ହଉଚି କୋଉଠି ?

ମଧୁ		ତୁ କାହା କଥା କହୁଚୁ କହିଲୁ ପୁଅ ...

ଉମା		କାହା କଥା ଥାଉ ... ସେଇ ନେଡି ... ମୋ ଘର ମଣିଷ..

ମଧୁ		ନେଡି ! ସିଏ ପୁଣି କ'ଣ କଲା ?

ଉମା		ତେମେ ଜାଣିନ କି ନନା, ମୁଁ ମୋର ଯେତେ ବାଡ଼େଇ ପିଟି ହେଲେ କ'ଣ ହବ ? ବାଡ଼ି ପଟେ ତାଙ୍କର ଚାଲିଚି, ତୁଣ ଶାଗ ଦିଆନିଆ ... ପିଲା ଦି'ଟା ବି ଏମିତି ହେଉଚନି ଯେ, ଏଠି ଭାତ ଖାଇଲେ, ସେଠି କୁଲୁକୁଞ୍ଚା ପକୋଉଚନି...

ମଧୁ		ତୁ ତ ବଡ଼ ଚିନ୍ତାରେ ପକେଇଲୁରେ.... ଇଏତ କିଛି ଭଲ କଥା ନୁହଁ... ତୁ ତାଗିଦା କରିଦେ ...

ଉମା		ସେଇ କଥା କହିବାକୁ ଯାଇ ପରା ଆମ ଘରେ ଅଶାନ୍ତି ... ନେଡି କହୁଚି... ସାତ ପୁରୁଷରୁ ଚାଲକୁଚାଲ ନାଗିଚି... ସେଥିରେ ଏମିତି ଅଇଁଗୁଣିଆ କଥା କଲେ ଧରମ ସହିବ ନାହିଁ...

ମଧୁ — ତୁ ଏବେ ହମ ହମ ହେଇ ସବୁ କଥା କେତି ଆଗରେ କହୁଚୁ କିଆଁ ? ଏଁ - ଆରେ ସେମାନେ ହେଲେ ତିରିଲା ଜାତି... ତାଙ୍କ ପେଟରେ କେବେ ନୁଣ ମିଳେଇ ଲାଣି ?

ଉମା — ଘର ଭିତରେ ମଣିଷଟା ଅଛି.. ତା' ସାଙ୍ଗରେ ତ ଫେର୍ ଗୋଟାଏ ପରାମରଶ..

ମଧୁ — (ଆଡ଼େଇ ଦେଇ) କିଛି ନାଇଁ କିଛି ନାଇଁ.... ମାଇପିଜାତି ସାଙ୍ଗରେ କି ପରାମରଶରେ ! ଖୋଦ୍ ବଡ଼ଠାକୁରେ ପରା ଡାକି ବଜେଇ କହିଦେଲେ...

'ଭାରିଯା ଅଟଇ ସିନା ପାଦର ପାଣ୍ଡୋଇ'... ପାଣ୍ଡୋଇ ମାନେ ବୁଝିଲୁଟି ? ଆରେ ଜୋତାମ... ଜୋତାକୁ ନେଇ ମୁଣ୍ଡରେ ଥୋଇଲେ ଯାହା ହଏ... ତୋର ହେଇଚି ସେଇଆ... ଇଏ ହେଲା ଏକାବେଳକେ ଶାସ୍ତ୍ର ବଚନ...

ଉମା — ତେମେ ତ ସାକ୍ଷୀ ଅଛ ନନା... ସେ ଘର ପେଇଁ ମୁଁ କ'ଣ ନ କରିଚି ! ବୁଢ଼ା ଏତେଦିନ ବାଧିକା ପଡ଼ିଲା... ରାତି ଅନିଦିରା ହେଇ ତା'ର ଗୁହଠୋଉଁ, ମୂତଠୋଉଁ କ'ଣ ନ କରିଚି ମୁଁ ? ନିଜ ସଂଗାରୁ କାଠ କାଢ଼ି ନ ଦେଇ ଥେଲେ, ବୁଢ଼ା ପୋଡ଼ା ହେଇ ନଥାନ୍ତା ସେଦିନ ! ସେ ସବୁ କଥା କୁଆଡ଼େ ଗଲା... କେତି ଅପାର ବାହାଘର କଲେ ଯେ, ଆମକୁ ବାସି ମୁହଁରେ ପଚାରିଲେ ନାଇଁ ଟିକିଏ... ତିନିସାଇ ଡକରା ଭଳି ସଂଜକୁ କିଏ ଜଣେ ଆସି କହି ଦେଇ ଗଲା ! ଏଥେରେ ମୋର କୋର୍ଧ ହବ କି ନାଇଁ କହୁନ -

ମଧୁ — ତୁ ସିନା ତାକୁ ଜାଣିନୁ... ମୁଁ ପରା ଦେଖି ଦେଖି ଏଡ଼େ । ଖାଇ ମୁହଁ ପୋଛା ବଉଁଶ ସିଏ... ତୁ ଏତେ ପାଖରେ ଥାଇ ଚିହ୍ନିପାରିଲୁ ନାଇଁ ...

ଉମା ହେଲା ଏବେ । ମୋର ଗଙ୍ଗା ଗଲି ଯେତିକି - ଫଳ ପାଇଲି ସେତିକି... ମୋ ବାଟରେ ମୁଁ ତା' ବାଟରେ ସିଏ...

ମଧୁ ହଉ ହଉ ପୁଅ... ତୁ ଆଉ ବେସ୍ତ ହ'ନା... ଶାସ୍ତ୍ର ପରା କହିଲା -

ଆପଣା କାର୍ଯ୍ୟଂ ତାତପର୍ଯ୍ୟଂ, ପରକାର୍ଯ୍ୟଂ ଯଥା କଥା... ବୋଇଲା

ଆପଣା କାର୍ଯ୍ୟକୁ ତାତ୍ପର୍ଯ୍ୟ କରି କି ନିଚିପଡ଼ କରି କରିବ । ଇଏ ହେଲା ଗୀତାରେ ସୋୟଂ ଭଗବାନଙ୍କ ବାଣୀ... ତୁ ତ ମୂଳରୁ ପର ପୀଢ଼ାରେ ପୋଇ ମଡ଼େଇବାରେ ରହିଲୁ... ଅଇନେ ତୁ କାନ୍ଦିବୁ ନାଇଁ ତ କିଏ କାନ୍ଦିବ... ?

ଉମା ତେମେ ଯଦି ପାରୁଚ ଆ'ର ଗୋଟାଏ କିଛି କିନାରା କର... ନ ହେଲେ, ମୁଁ ପଛେ ଘର ଦୁଆର ଛାଡ଼ି ପିଲାଛୁଆ ନେଇ ଦେଶାନ୍ତରୀ ହେବି... ଏଠି ଏ ବାର ହୀନସ୍ତା ହେଇପାରିବିନି-

ମଧୁ ଆରେ ପାଗେଲାଟାଏ ନା କ'ଣ ? କିରେ ପରିଡ଼ା ଘର ବୋଇଲେ ଦଶଖଣ୍ଡ ମୌଜାରେ ନା ପଡୁଚି - ଗଛମାଛ, ବାଗବଗିଚା, ଜମିବାଡ଼ି, ଘରଦ୍ୱାର, କେଉଁ ପଦରେ ଜଗନ୍ନାଥ ତତେ ଊଣା କରିଛନ୍ତି ଯେ, ତୁ ବାତେରା ପରି ଘର ଛାଡ଼ି ପଳେଇବୁ ବୋଲି କହୁଚୁ ? ସେ ବୁଦ୍ଧି ଛାଡ... ମୋ କଥା ଶୁଣ...

ଉମା ଶୁଣିବି ଆଉ କ'ଣ ... ମୋର ତ ଛାଡିଲି ସକଳ ଆଶା ନା ଧଇଲି ଗୋବିନ୍ଦ ଭରସା... ସମସ୍ତିକି ଛାଡ଼ି ତମକୁ ଧରିଚି... ମାରିଲେ ମାରିବ ତମେ - ତାରିଲେ ତାରିବ... ତେମେ...

# ୪ର୍ଥ ଦୃଶ୍ୟ

(ନଈ ବନ୍ଧରେ ଡାହାଣିଆ ଖରା ପଡ଼ିଛି... ବନ୍ଧ ତଳକୁ ପୌଷ ମାସର ମଲା ନଈ - ବିଲପାଟ ଆଡୁ କୁହୁଡ଼ିର ଏକ ପାତଳା ପରଦା ଧୀରେ ଧୀରେ ଭାସି ଆସୁଚି... ଅରକ୍ଷିତ ବିଲ ଆଡୁ ଫେରୁଚି... ବିପରୀତ ଆଡୁ ଆସୁଛନ୍ତି ମଧୁ ମିଶ୍ରେ)

ଅରକ୍ଷିତ — ନନା, ଓଳିକି...

ମଧୁ — ସର୍ବାରିଷ୍ଟ ଶାନ୍ତି ହଉ... ଆରେ ରେ ଇଏ କିଏବା (ହସରେ ମୁହଁ ମଣ୍ଡାଇ) ହଜିଲା ବଳଦ ଖୋଜିଲା ଠେଇଁ ପରା...

ଅର — ମୋ ଠେଇଁ କ'ଣ କାମ ଥେଲା ନନା ?

ମଧୁ — କାମ ? ଆରେ କାମ ଆଉ କ'ଣ ? କେତେଦିନୁ ତତେ ଦେଖିନାଇଁ ଯେ, ମନଟା ଯୋଉ ଗୋଳେଇ ଘାଣ୍ଟି ହଉଚି, ତା' ସେଇ ଦିନ ରାତି କଳାବାଲା ଜାଣେ...

ଅର — ତେମେ ତ ଦେଖୁଚ ନନା... କଟା ଝଡ଼ା ବେଳ। ଏଇନେ ଟିକିଏ କମର ନ କଷିଲେ, ବାର ବରଷର ତପ ଶୁଖୁଆ ପୋଡାରେ ଯିବ। ମୂଳିଆଙ୍କ ହରକତ ସାଙ୍ଗକୁ ମୁଁ ଏଣେ ଏକୁଟିଆ ଧନ୍ଦି ହେଇଯାଉଚି...

ମଧୁ — ଯାହା କହିଲୁରେ ପୁଅ... ତୋର'ତ ସିଏ ଜମି ନୁହେଁ - ସୁନାଥାଳୀ, ମା' ଲକ୍ଷ୍ମୀ ଯେମିତି ଭଣ୍ଡାର ଓଜାଡ଼ି ଦେଇଚନ୍ତି - ବାଟରେ ଗଲାଲୋକ ପରା ଘଡ଼ିଏ ଥକା ହେଇ ସିଆଡ଼େ ଅନାଉଚନ୍ତି।

ଅର	ତମ ପାଁଚଣଙ୍କ ପାଦଧୂଳି କଇଲାଣରୁ ପେଟକୁ ମୁଠାଏ ମିଳିଯାଉଚି, ସେଇ ମୋର ଢ଼େର... ମୁଁ କୋଉ ଜମିଦାରୀ ମକଦମୀ କି ଭାର୍ଜନ... ?

ମଧୁ	କିରେ ଇଏ କି କଥା ? ପରମାନନ୍ଦ ଦାସେ ଯେତେବେଳେ ଘୋଡ଼ା ଚଢ଼ି ଗଡ଼ଜାତରୁ ଘରକୁ ବାହୁଡୁ ଥେଲେ, ସେତେବେଳେ ଟାପୁ ଶବଦରେ ଖଣ୍ଡ ମଣ୍ଡଳ କମ୍ପୁଥେଲା... ଥୋରିଆ ବଳଦର ଘଣ୍ଟି ଘାଗୁଡି ଶବଦରେ ମୁଲକ ଉଚ୍ଛୁଳୁଥେଲା... ତୁ ତାଙ୍କରି ନାତିଟି...

ଅର	(ଅଳ୍ପ ହସି) ସେ କପୂର ତ ନାଇଁ... ଛିଣ୍ଡା କନା ଟିକିଏ ବି ନାଇଁ...

ମଧୁ	କେମନ୍ତ ! କିରେ କହିଚି ପରା, ମଲା ହାତୀ ଲକ୍ଷେ ଟଙ୍କା... ପରମାନନ୍ଦ ଦାସ ନାଇଁ ବୋଲି କ'ଣ ତା' ବଉଁଶ ବୁଡ଼ି ଯାଇଚି ?

ଅର	(ଦୀର୍ଘଶ୍ୱାସ ପକାଇ) ଛାଡ଼ ସେ କଥା, ତେମେ ମତେ କାଇଁକି ଖୋଜୁଥେଲ, କହିଲ ନନା...

ମଧୁ	ତୁ କ'ଣ କିଛି ଶୁଣିନୋଉଁ ?

ଅର	କୋଉ କଥା ଶୁଣିନାଇଁ ?

ମଧୁ	(ଇତଃସ୍ତତ) ଏ... ଇ... ଜମିବାଡ଼ି ମପାଚୁପା କଥା...

ଅର	କି ଜମିବାଡ଼ି ? କାହାର ମପାଚୁପା ? ମୁଁ ତ କିଛି ଜାଣିପାରୁ ନାଇଁ...

ମଧୁ	ଆରେ ପୁଅ, ନିଜର ବେଲି ଭାବି... କଥା ପଦେ କହୁଚି । ତୁ ଖଙ୍ଗୁସୁ ମଣିବୁ ନାଇଁ... ଏ ସଂସାର ବଡ଼ ବିଷମ ଥାନ...

ଅର	ତେବେ ବି ବୁଝିଲି ନାଇଁ ନନା...

ମଧୁ	ଏଇ ଉଦାରିଆ ଗୁଣ ପେଇଁ ତୁ ଦିନେ ମାଡ଼ ଖାଇଯିବୁ...

ଅର	କ'ଣ ଆଉ କରିବି ? (ହସି) ଯିଏ ଯେମିତି...

ମଧୁ		ଯାହା କହିଲୁରେ ପୁଅ । ଶାସ୍ତ୍ର ପରା କହିଲା... ଯାହାର ଯେମନ୍ତ ସୋଭାବ - ନା - ଗୁରୁ କହିଲେ କିସ ହେବ...

ଅର		ହଉ, ମୁଁ ତେବେ ଯାଏଁ...

ମଧୁ		କିରେ ଯିବୁ ଯିବୁ ହଉଚୁ ଯେ, ଏଣେ କିମ୍ଭୀର ନେଇ ମଝି ନଈରେ କଲାଣି...

ଅର		କିମ୍ଭୀରର ପର୍କୁତି ସେଇଆ... ବାଗରେ ପାଇଲେ ପାଣିକି ଟାଣିବ...

ମଧୁ		କଥାଟା ଠସିକିରେ ଉଡ଼େଇ ଦବା ଭଳି ନୁହଁ... ମୋ ସାନକୁହାମାନ...

ଅର		ତେମେ ତ ମତେ କିଛି କହିନା ନନା...

ମଧୁ		କହିବି ବେଲି ତ ଘଣ୍ଟାଏ ହବ ବକର ବକର ହଉଚି - ତୁ ଶୁଣିଲେ ସିନା...

ଅର		କହ ତେବେ...

ମଧୁ		(ଚାରି ଆଡ଼କୁ ଥରେ ଅନାଇ ଦେଇ ଚାପା କଣ୍ଠରେ) ଡମା ଯେ ତେଣେ ଅମିନ ପୂରେଇ ଇଜମାଇଲି ଜମି ମାରି ନବାରେ ରହିଲାଣି... ତୁ ଜାଣିଚୁ ?

ଅର		(ଆଶ୍ଚର୍ଯ୍ୟରେ) ଡମା ? ଆମ ଡ... ମା... ?

ମଧୁ		କଥାଟା ମୋ କାନରେ ଯେମିତି ପଡ଼ିଯାଇଚି... ମୁଁ ସାଙ୍ଗେ ସାଙ୍ଗେ ତାକୁ କହିଲି... ହଇରେ ଚଣ୍ଡାଳ... ଏ ଦୁଷ୍ଟବୁଦ୍ଧି ତତେ କିଏ ଦେଲା ? ବାକି ଖଜଣା ପାଇଁ ଯେତେବେଳେ ପେରିଡ଼ା... ବଉଁଶର ଭିଟାମାଟି କୋରଖ ହବାକୁ ବସିଥେଲା, ସେତେବେଳେ ସାଧୁଦାସ ପରା ମକଦମ ଘରେ କୁଣ୍ଡଳ ପାଟଯୋଡ଼ ବନ୍ଧାପକେଇ ଜମି ମୁକାଲିଥେଲା... ଲୋକେ ସିନା ଭୁଲିଗଲେଣି... ହେଲେ ମଧୁ ମିଶ୍ର ଏ କଥା ଭୁଲିବ କେମିତି ?

ଅର ତମା ଏ କଥା କରିବ, ମୋର ତ ଜମା ବିଶ୍ୱାସ ହଉନାଇଁ...

ମଧୁ ଅମିନ ଯେତେବେଳେ କଡ଼ି ନେଇ ତୋ ବାରିମଝିରେ ପୂରେଇବ, ସେତେବେଳେ ଯାଇ ତୁ ଧରତେ ଯିବୁ... ମୁଁ ତାକୁ କହିଲି ତତେ ଧରମ ସହିବ ନାଇଁରେ...

ଅର ଯାହା ମୋ କପାଳରେ ଥବ... ମୁଁ ଆଉ କ'ଣ କରିବି ?

ମଧୁ ଆକୁ କହନ୍ତି ଦଇବୀ ବେଠିଆ... ଆଖିରେ ଆଙ୍ଗୁଠି ଗେଞ୍ଜି ସେ ତୋ' ସାତପୁରୁଷ ଦଖଲୀ ଜମି ଉପରେ ଝୁଣ୍ଟା ପୋତିବ... ଆଉ ତୁ ଜଳ ଜଳ ଅନେଇଥବୁ ? ସେଇ ଏକା ଏଡ଼େ ବାହାଦୁରିଆ ଟାଏ ?

ଅର ମତେ ତ ଆଉ ବୁଦ୍ଧିବାଟ ଦୁଶୁନାଇଁ...

ମଧୁ ବଡ଼ଶ ବୁଡ଼ିଲା ବେଳକୁ ଘୋଡ଼ା ମୁହାଁ ପୁଅ ଜାତ ହୁଅନ୍ତି - ତୋ'ର ହେଇଚି ସେଇଆ... କିରେ ତୁ ମର୍ଦ୍ଦପୁଅ... ଠେଙ୍ଗାଧରି ଠିଆ ହବୁ । କାହାର ଏଡ଼େ ସାହସ, ତୋ' ଜମି ଉପରେ ପାଦ ଦବ ? ମାଟି ବାପର ନୁହେଁ, ତାପର, ବୁଝିଲୁରେ ଓଲୁ ।

ଅର ନଙ୍ଗଳ ଧରା ହାତରେ ଠେଙ୍ଗା ଧଇଲେ, ହାତ ଥରିବନି ! ଯାହାର ହାତ ଧରି, ଚାଲି ଶିଖେଇଚି, ଆଜି ତାରି ମୁଣ୍ଡରେ ଠେଙ୍ଗା କଚାଡ଼ିବି ? ନାଇଁ ନନା, ତେମେ ମତେ ସେ କଥା କହନା... ମୋର ଉପରେ ଧରମ ଅଛି...

ମଧୁ (ସ୍ୱର ବଦଳାଇ ହସି) ଅଲାଗିଟା... ଆରେ ତତେ ମୁଁ ଠେଙ୍ଗା ଚଳେଇବାକୁ କେତେବେଳେ କହିଲି ? ତୁ ଏଇଆ ବୁଝିଲୁ ?

ଅର ଆଉ ତେବେ ?

ମଧୁ ଅମିନ ବାବୁ ସରକାରୀ ନୋକ । ଶୁଣିଚି... ତାଠୁଁ କୁଆଡ଼େ ମୋଟା ରକମ ପକେଇ, ସେ ଏଇ ନକଲା କାମଟା କରିବ ବୋଲି ତାକୁ ନିର୍ଧାର୍ଯ୍ୟ ଜବାବ ଦେଇଚି... ମୁଁ କହୁଚି କ'ଣ କି, ଆମେ

ବି ଯିବା, ଅମିନ ସାଙ୍ଗରେ କଥା ବାର୍ତ୍ତା କରିବା... ଦରକାର ପଡ଼ିଲେ, ପାଞ୍ଚ ପଚିଶ...

ଅର ତା' ଆଗରୁ ମୁଁ ଡମାକୁ ଥରେ ପଚାରିବି...

ମଧୁ ଏଇ ବୁଦ୍ଧି ନେଇ ତୁ ମାମଲତି କରିବୁ ? ତୁ ପଚାରିଲେ, ସିଏ... କ'ଣ କହିବ ?

ଅର ତେମେ ଜାଣିନା ନନା, ଡମାଟା କାଲିକା ପିଲା । ମୋ ଆଗରେ ଆଜିଯାଏ, ସଳଖ ହେଇ ଠିଆ ହେଇ ନାଇଁ... କିଏ ତାକୁ କ'ଣ କହି ଦେଇଥିବ କି କ'ଣ...

ମଧୁ ସେ ଦିନ ରାତିରେ, ତୁ ଆଉ ତୋ' ଘର ମଣିଷ ଯେତେବେଳେ କୁକୁର କଥା କହିବାକୁ ଯାଇଥେଲ, ସେତେବେଳେ ତମ ମୁହଁ ଉପରେ କବାଟଟା ଧଡ଼ କରି ବନ୍ଦ କରି ଦେଲା କିଏ ? ସେଇ ଡମାଟି । ଏ କଥା ବି ତାକୁ କିଏ ଶିଖେଇ ଦେଇଥେଲା ? ଶାସ୍ତ୍ର ପରା କହିଲା- 'ମଣିଷ ଚିହ୍ନିବ କଥାରୁ, ପଣ୍ଡିତ ଜାଣିବ ଯଥାରୁ'... ଭାତହାଣ୍ଡିରୁ ଗୋଟାଏ ଚିପିବ ସିନା...

ଅର ମୋ ମୁଣ୍ଡ ଗୋଳମାଳ ହେଉଯାଉଚି ନନା... ମୁଁ କିଛି ଠିକଣା କରି ପାରୁନାଇଁ...

ମଧୁ ତୁ ଆସିଲୁ ଆ ମୋ ସାଙ୍ଗରେ.... ତତେ କିଛି କରିବାକୁ ହେବ ନାଇଁ... ମୁଁ ଯାହା କହିବି, ସେଇଆ କରିବୁ... ଆଗରୁ ଥାନାରେ ଗୋଟାଏ ଖବର ଦେଇଦେଲେ... (ଟାଣିଟାଣି ନେଇଗଲେ)

# ୫ମ ଦୃଶ୍ୟ

(ଅରକ୍ଷିତଙ୍କ ବାଡ଼ି । ଅରକ୍ଷିତ ଘରଣୀ ରାଧା କୁଲାଟିଏ ଧରି ଶାଗ ତୋଳୁଛନ୍ତି । ମଝିରେ ମଝିରେ ତରଙ୍ଗ ତରଙ୍ଗ ହୋଇ ଚାରି ଆଡ଼କୁ ଅନୋଉଛନ୍ତି । ମନେ ହେଉଛି, ସେ ଯେମିତି କାହାକୁ ଅପେକ୍ଷା କରିଛନ୍ତି । ଗୋଟିଏ କଞ୍ଚାବାଡ଼ ଦାସ ଘର ଆଉ ପରିଡ଼ା ଘରର ସୀମା ନିର୍ଦ୍ଦେଶ କରୁଛ । କିଛି ସମୟ ପରେ ପରିଡ଼ା ଘର ପଟେ ଗରାଟିଏ ଧରି ଦେଖାଦେଲେ ନେତ-ମାନେ ନେତ୍ରମଣି... ସେ ଚାରିଆଡ଼କୁ ଅନାଉ ଅନାଉ ବାଡ଼ ପାଖକୁ ଲାଗି ଆସିଲେ । ଏ ପଟୁ ରାଧା ବି ଶାଗ ତୋଳାବନ୍ଦ କରି... ପାଖେଇ ଗଲେ)

ରାଧା (ଚାପା କଣ୍ଠରେ) ତୋ'ର ଆଜି ଏତେ ଡ଼େରି କାଇଁକି ହେଲା ଲୋ ନେତ ...

ନେତ (ସେଇସ୍ୱରରେ) ସକାଳୁ ଉଠି ଲୁଗାଟା ବଦଳେଇ ବାହାର ଚୁଲିରେ ରୋଷେଇ କଲେ ପିଲା ଦିଟା ଖାଇ ଇସ୍‌କୁଲକୁ ଯିବେ... ଇଏ ବି କୁଆଡ଼େ ବନ୍ଦବସ୍ତ ଅଫିସି ନା କୁଆଡ଼େ ଗଲେ । ବାସିଘର ଦୁଆର ପଡ଼ିଚି... କୋଉଠୁ କିଛି ହେଇନାଇଁ... ଖାଲିତେମେ ଅନେଇଥବ ବେଲି ମୁଁ ପଳେଇ ଆଇଲି...

ରାଧା ଇଏ ସବୁ କି ପାଲା ନାଗିଚି ଲୋ ନେତ ? ଫର୍ଚ୍ଚା ନହଉଣୁ ସେ ସତ୍ୟା ନାଶିଆ ମଧୁ ମିଶରଟା ଆସି ଆଙ୍କ ସାଙ୍ଗରେ କ'ଣ ଫୁସୁର ଫାସର ହଉଥେଲା... କବାଟ ଫାଙ୍କରେ ଯେତେ କାନେଇଲି - କ'ଣ କିଛି ଶୁଗିଲା କିଲୋ ! ସେ ପୋଡ଼ା ମୁହାଁଟା ପରା... ଗଣଗଣିଆ ମାଛି ଦେରେ ଗଣଗଣ ଗଣଗଣ ହେଇ ଆଙ୍କ କାନ ପାଖରେ କ'ଣ କହିଯାଉଥାଏ... ଆଉ ଇଏ ଖାଲି ସର୍ବଜାଣ ମେତି ମୁଣ୍ଡ ଟୁଙ୍ଗାରୁ ଥାଆନ୍ତି... ଏଥିରୁ ମୁଁ ଆଉ କ'ଣ ବୁଝିବି ?

ନେତ — ମଧୁ ମିଶର ତମ ଘରକୁ ଆଇଥେଲା ? କାଲି ରାତି ଅଧରେ ଆଙ୍କ ପାଖରୁ ଯାଇଚି... ମତେ ଖାଲି ତାଙ୍କ କଥାରୁ ଗୋଟାଏ ପଦ କାନରେ ବାଜିଗଲା... ମଧୁ ମିଶର କହୁଥାଏ 'ଥାନା'... (କାନ୍ଦକାନ୍ଦ ହୋଇ) କ'ଣ ହବ ଅପା, ଏମାନେ କ'ଣ ଶେଷରେ ଥାନାପୁଲିସିଙ୍କ ପାଲରେ ପଡ଼ିବେ ?

ରାଧା — ଯଦି ପଡ଼ିବେ, ତେବେ ତା' ଫଳ ଭୋଗିବେ । ସେଥିକି ତୁ କ'ଣ କରିବୁ ନା ମୁଁ କ'ଣ କରିବି ? ତୁ ଏବେ ଏମିତି କାନ୍ଦକାନ୍ଦ ହେଇ ଯାଉଚୁ କାଇଁକି ?

ନେତ — (କାନ୍ଦି ପକାଇ) ପିଲା ଦି'ଟାଙ୍କର ଶୁଖିଲା ମୁହଁ ମୁଁ ଆଉ ଦେଖିପାରୁ ନାଇଁ ଅପା । ବଡ଼ରେ ବଡ଼ରେ କ'ଣ ହେଲା... ସେଇଠୁ ହୁକୁମ ଜାରି ହେଲା କ'ଣ ନା... କେହି କାହା ସାଙ୍ଗରେ ମିଶିବେ ନାଇଁ, କଥା କହିବେ ନାଇଁ...

ରାଧା — କ'ଣ ଆଉ କରିବା ?

ନେତ — ତେମେ କହିଲ ଅପା, ପିଲାଙ୍କର କୋଉ ବୁଦ୍ଧିଶୁଦ୍ଧି ହେଲାଣି ? ଏତେ ଦିନର ଅଭ୍ୟାସ ପଦେ କଥାରେ କିଏ କୋଉଠି ଛାଡ଼ି ଦେଲାଣି । ରଘୁ କାଲି ବୁଲା ସାଙ୍ଗରେ କୋଉଠି କଥାବାର୍ତ୍ତା ହଉଥେଲା... ଆଙ୍କ ଆଖିରେ ପଡ଼ିଗଲା... ପିଲାଟାକୁ ଟାଣିଆଣି ଯୋଉ ମାଡ଼...

ରାଧା — ବୁଲା ପରା ସେଇକଥା ଦେଖି ସିଆଡୁ କାନ୍ଦି କାନ୍ଦି ଆସି ଶୋଇଲା ଯେ, ମୁଁ ଡାକି, ଇଏ ଡାକି ଫାଟି ଫୁଟିଗଲୁ - ନା' ଉଠିଲା ନା ଖାଇଲା... ବହୁତ ରାଣ ନିୟମ ପକେଇବାରୁ କହିଲା... ଡମାଦାଦା ରଘୁକୁ ବାଡ଼େଇ ପକେଇଲେ... ଏତିକି କହି ତା'ର ସେ ଯୋଉ କାନ୍ଦ !!

ନେତ     ମୁଁ ମରିଯାଉ ଥାଏଁଟି । ତାକୁ ଟିକିଏ ଆଣିଲ ନାହିଁ - ମୁଁ ତାକୁ ବୁଝେଇ ଦେଇଥାଆନ୍ତି ।

ରାଧା     ତୁବି ଯେମିତି, ସିଏ କୋଉ ଘରେ ଅଛି ! ବେଳ ନ ହଉଣୁ ଇସ୍‌କୁଲ ଧାଇଁଚି... ତା' ତରତର ଦେଖି ମୁଁ ସବୁ ଜାଣିଗଲି ।

ନେତ     ଜାଣିଗଲ ? କ'ଣ ଜାଣିଗଲ ?

ରାଧା     ଆଲୋ ଓଲୀ, ଏତିକି ବୁଝିପାରିଲୁ ନାଇଁ ? ଇସ୍‌କୁଲକୁ ଗଲେ ଦେଖନ୍ତୁ, ରଘୁ ଆଉ ବୁଲା କେମିତି ହାତ ଧରାଧରି ହେଇ ପଢ଼ିଆରେ ବୁଲୁଚନି... କି ଇଏ ପକେଟ୍‌ରୁ କାଢ଼ି ତା' ପାଟିରେ କ'ଣ ଦଉଚି, ସିଏ ଅଣ୍ଟାରୁ କାଢ଼ି ତା' ପାଟିରେ କ'ଣ ଗୁଞ୍ଜୁଚି...

ନେତ     (ହସି ପକେଇ) ସତେ ଯେମିତି ଆଖିରେ ଦେଖିଲା ମେତି କହିଯାଉଚ ...

ରାଧା     ପିଲା ଆମଠୁ ଜନମ... ତାଙ୍କ ମନ କଥା ଆମେ ବୁଝିବୁ ନାଇଁ ?

ନେତ     (ଭୟରେ) ଯଦି ଆଙ୍କ ଆଖିରେ ପଡ଼ିଯାଏ ?...

ରାଧା     ମାଡ଼ ଖାଇବ... ଅଭ୍ୟାସ ଛାଡ଼ିବ ନାଇଁ... ଉମା ଏବେ ବୁଝୁନାହାନ୍ତି, ଜବର୍ଦ୍ଦସ୍ତି ପିଲାଙ୍କଠୁ କାମ ଆଦାୟ କରିହୁଏ ନାଇଁ... ଆଗରେ କରିବେ ନାଇଁ... ପଛ ବୁଲେଇଲେ କରିବେ... ଏମିତିରେ ପିଲା ଚୋରହେଇ... ଯାଆନ୍ତି...

ନେତ     ମତେ ବି ତ ଧମକ ଦିଆ ହେଇଚି... ଦାସ ଘର ବିଲେଇ ପିଲାବି ପରିଡା ଘରର ଦୁଷ୍‌ମନ୍ । କେହି କାହା ସାଙ୍ଗରେ କଥା କହି ପାରିବେ ନାଇଁ ... କହିବାର ଧରା ପଡ଼ିଁଲେ... ପଥ ପଚାରି ପିତା ଘର ଯିବ...

ରାଧା     (ହସି) ସେଇ ଗୋଟିଏ ଧମକାଣ - ଆଉ କ'ଣ ଏ ମରଦପୁଏ ଜାଣନ୍ତି କି ? କ'ଣନା... ବାହାରିଯା...

ନେତ ତେମେ ହସୁଚ ଅପା ! ମୋର ତ ଦିହ ହାତରୁ ଜୀବନ ଛାଡ଼ି ଯାଉଚି...

ରାଧା ଆଲୋ ହସିବି ନାଇଁ କ'ଣ କାନ୍ଦିବି ? କିଏ ଏଡ଼େ ବାହାର କଲା ବାଲା ମ ? କାଇଁ, ଆମେ କ'ଣ ଆପେ ଆପେ ଆସି କାହା ଘରେ ପଶିଯାଇଚୁ ନା ପୋଇଲୀଗିରି କରିବାକୁ ହାତ କାଟି ନେଖି ଦେଇଚୁ ! ଗତର ଖଟେଇ ଘର ଚଳୋଉଚୁ ଯେମିତି, ପେଟକୁ ମୁଠାଏ ପିଠିକୁ ଖଣ୍ଡେ ପିନ୍ଧୁଚୁ ସେମିତି...

ନେତ (ଡରି) ଅ... ପା... ?

ରାଧା ଛାତିକି ପଥର କର । ଯେତିକି ଡରିବୁ, ଏମାନେ ସେତିକି ଡରେଇବେ । ଜୀବନ ସାରା ଶାନ୍ତି ଭିତରେ ଡହଳ ବିକଳ ହଉଥବୁ । ଥରେ ମୁହଁ ଟାଣ କରି ଦେଖ୍... କ'ଣ ହଉଚି... ମତେ କହିବୁ...

ନେତ ତେମେ ସିନା କହୁଚ ଅପା... ହେଲେ...

(ଦୂରରୁ ନାରୀ କଣ୍ଠରେ ଶୁଣାଗଲା... ବୋହୂ... ଏ ବୋହୂ... ଆଲୋ ନେତି ... (ନେତ ଡ଼ରରେ) ହେଇ... ମାଳଅପା ଡାକିଲେଣି ... ମୁଁ ଯାଉଚି... ସେ ଯଦି ଆଙ୍କ ଆଗରେ ଫୋଡ଼ିଦେବେ...

ରାଧା ତୁ ରହ... ମାଳ ଅପା କୋଉଦିନ ଆଇଲେ ?

ନେତ କାଲି ରାତିରେ...

ରାଧା ସେ ଏ ସବୁ ଜାଣିଲେଣି ?

ନେତ ଭାଇ ଭଉଣୀ ରାତି ଅଧଯାଏ କ'ଣ ସବୁ ବୋଲାବୋଲି ହଉଥେଲେ... ଜାଣି ନଥିବେ ?

ମାଳ (ଆସି) ଆଲୋ ତୁ ଏଇଠି ? ମୁଁ ତତେ ଦୁନିଆ ସାରା ଖୋଜି ସାରିଲିଣି...

ରାଧା (ବାଡ଼ ଏପଟୁ) ଦଣ୍ଡବତ ହଉଚି ଅପା...

ମାଳ ଆଲୋ ରାଧୀ, ତୁ ବି ଅଛୁ ପରା... ଆସି ବୁଢ଼ୀଟି ମାନ ହେଲ... ମୁହଁକୁ ମୁହଁ ଯୋଡ଼ି ଗପ କରିବା ଛାଡ଼ିଲ ନାଇଁ...

ରାଧା ତେମେ ଶୁଣିନା କି ଅପା ? ହୁକୁମ୍ ଜାରି ହୋଇଚି ପରା...

ମାଳ ଆଲୋ ଶୁଣିଲିଣିବା... ଡମା ପରା ମତେ କାଲି ରାତିରେ କହୁଥେଲା... ମୁଁ ତାକୁ କହିଲି ହଇରେ ଅଲକ୍ଷେଣା.. ଏବୁଦ୍ଧି ତତେ କିଏ ଦେଲା ? ଯେମିତି ଶୁଣିଚି.. ମୁହଁଟାକୁ ନଦି ଦେଲାଯେ ଆଉ କ'ଣ ଭଲ କରି କଥା କହୁଚି । ନ କହିଲେ ନାହିଁ, ମାଳ ସବୁବେଳେ ହକ କଥା କହେ- ବାପା ଭାଇଙ୍କ ଭିଟା । ମନଟା ବୁଝେ ନାଇଁ ବୋଲି ଛ'ମାସ ବର୍ଷକେ ଥରେ ଦଉଡ଼ି ଆସେ । ନହେଲେ ଏବେ ନ ଆସିବି... ମୋର କୋଉ ପେଟ ଅପୋଷା ରହିଯାଉଚି ?

ନେତି (ବିକଳରେ) ଇଏ ତେମେ କ'ଣ କହୁଚ ଅପା ! ତମ ଘର, ତମ ପୁଅ ନାତି... ତେମେ ଶେଷୁକୁ...

ମାଳ ବାପମା ନ ଥେଲା ଝୁଅ... ଭାଇ ଭାଉଜ ଯେତେ ଯାହା ହେଲେ ବି ସାତ ପର... ମୋର କୋଉ ଜୋର୍ ଅଛି ?

ରାଧା ଆମେ ସିନା ପରଝୁଅ ଅପା... ମଲା କଙ୍କଡ଼ା ସାଙ୍ଗେ ସମାନ... ଆମର ସିନା ଏଠି ଜୋର୍ ନାହିଁ... ଆମ କଥାର ଦାମ୍ ନାହିଁ... ତେମେ ତ ଏଇ ଗାଁର ଝୁଅ... ଗୋଟାଏ ଭାଇ ନପଚାରିଲେ ଦଶଟା ଭାଇ ଦଉଡ଼ି ଆସିବେ । ପିଇସାତ ତମକୁ ଦାଣ୍ଡରେ ବସାଇଦେଇ ଯାଇ ନାହାନ୍ତି । ଏଡ଼େ ବଡ଼ ହାକିମ ପୁଅ... ମାଆ ମାଆ ହେଇ... ଏବେ ବି ତମ ଚାରିପଟେ କେମିତି ଗୁଡୁରୁ ଗୁଡୁରୁ ହଉଚି, ସେ କଥା କ'ଣ ଆମେ ଦେଖୁନୁ ନା ଶୁଣୁନୁ ?

ମାଳ (ହସି) ସେଇ କଥା ତମମାନଙ୍କୁ କହୁଚି । ମାଇପି ଜନମ ପାଇଚୁ ବୋଲି ଆମେ କ'ଣ କାହା ପାଦତଳର ଦାସୀ ? ଆମର ମନନାଇଁ, ସଉକ ନାଇଁ । ଜୀ-ହଜୁର କରୁ କରୁ ଜୀବନ କଟିଯିବ ?

ନେତ ମାଇକିନିଆ ଝିଅ ପରା.. ଆମର କୋଉ ଅଧିକାର ଅଛି ?

ମାଳ ଆଲୋ, ଅଧିକାର କେହି କାହାକୁ ଦିଏ ନାହିଁ, ଛଡ଼େଇ ନବାକୁ ହୁଏ । ଶୁଣିଚୁ ଭଲା, କୋଉ ରଜା ନିଜ ମର୍ଜିରେ ନିଜ ରାଇଜକୁ ଆଉ କାହାକୁ ଦେଇ ଦେଇଚି ? କେହି ଦିଅନ୍ତି ନାହିଁ, ମୁହଁ ଜୋର୍‌ରେ ଟାଣି ନବାକୁ ପଡ଼େ ।

ରାଧା ସେଇ କଥା ମୁଁ ନେତକୁ କହୁଥେଲି । ଅପା, ତେମେ ଆସିଲଣି । ଘର ଅବସ୍ଥା ତ ଦେଖୁଚ.. ପିଲାମାନଙ୍କ ମୁହଁକୁ ଅନେଇ ହଉନାଇଁ । ଛାତି ଫାଟି ଯାଉଚି ସିନା.. ହେଲେ କିଛି କରିବାର ନାହିଁ, ତମକୁ ମୋ ରାଣ । ମୋ ମୁଣ୍ଡ ଖାଅ.. ଯିବା ଆଗରୁ ଗୋଟାଏ କିଛି ବାଟ କରିଦେଇ ଯାଅ ।

ନେତ ବୁଲା ସାଙ୍ଗରେ ପଦେ କଥା କହି ଦେଲା ବେଲି.. ରଘୁ ଉପରେ କାଲି ମାଡ଼ ପଡ଼ିଲା - ସେ ଯୋଉ ମାଡ଼ ଅପା.. ଗୋରୁ ଗାଈ ବି ସହି ପାରିବେନାହିଁ ... ଆଜି ମୋ ଉପରେ ବି ପଡ଼ିବ ... ଏମିତି କେତେ ଦିନ ଚାଲିବ ?

ମାଳ ତମାଟାକୁ ଲକ୍ଷ୍ମୀ ଛାଡ଼ିଗଲେ..

ରାଧା ଇଏ କୋଉ କମ୍ ? ମଧୁ ମିଶରତ କାନରେ ମନ୍ତର ଫୁଙ୍କୁଚି ?

ମାଳ (ଚମକି) ସେଇ ଘରଭଙ୍ଗା ହନୁମାନ ? ଆଜିଯାଏ ବଂଚିଚି ? ତାରି ପାଲରେ ପଡ଼ିଲେ ତମା ଆଉ ଅର୍ଖିତ ! ତା'ଗୁଣ ଏ ଖଣ୍ଡ ମଣ୍ଡଳରେ କିଏ ନଜାଣିଚି ।

ରାଧା — କହିଲି ପରା... ଆମେ ତ ମାଇକିନିଆ ଝିଅ । ଆମ ଦେଇ କୋଉ ଶାଗ ସିଝିବ ?

ମାଳ — (ଚିନ୍ତା କରି) ସିଝିବ ଲୋ ସିଝିବ । ପକ୍କା ରାନ୍ଧୁଣୀ ହେଇଥେଲେ ଶାଗ ତ ଛାର, ପଥରକୁ ବି ସିଝେଇ ପରଶିଦବ ।

ନେତ — ଅପା...

ମାଳ — ରଃ ତୁ... ପାଟି କରନା... ଆକାଶକୁ ଅନେଇ ଭଗବାନଙ୍କୁ ଗାଳି ଦେଲେ ମନ ସିନା ବୁଝିଯିବ, ହେଲେ ବାଟ ନିଜ ଭିତରୁ ଖୋଜିବାକୁ ପଡିବ । ମୁଁ ଥାଉ ଥାଉ ଉଚ୍ଛନ୍ନ ହେଇଯିବ - ମୁଁ ବସି ବସି ଦେଖୁଥିବି - କେବେ ନୁହଁ, ନା-

ରାଧା — ଅପା...

ନେତ — ଅପା ...

## ୬ଷ୍ଠ ଦୃଶ୍ୟ

(ସମୟ ସକାଳ । ଗାଁ ଦାଣ୍ଡରେ କଥାବାର୍ତ୍ତା ହୋଇ ମଧୁ ମିଶ୍ର ଆଉ ଡମା ଆସୁଛନ୍ତି । ସାଙ୍ଗରେ ଆଉ ଦି ତିନିଜଣ ଲୋକ ବି ଅଛନ୍ତି । ସେମାନେ ଆସି ଅରକ୍ଷିତଙ୍କ ଘର ଆଗରେ ଠିଆ ହେଲେ । ମଧୁ ମିଶ୍ର ଆଉ ଡମା କ'ଣ କଥାବାର୍ତ୍ତା ହେଲେ । ତା'ପରେ ମଧୁ ମିଶ୍ର ଡାକିବାକୁ ଆରମ୍ଭ କଲେ )

ମଧୁ — ଅକ୍ଷି, ଆରେ ଅକ୍ଷି...

୧ମ ଲୋକ : ଅମିନ ବାବୁ, ତେମେ ତମର ସରଞ୍ଜାମ ସବୁ ନେଇ ଆସିଚଟି ?

୨ୟ ଲୋକ : ଏ ଯୋଉ ବେଗ୍ ଦେଖୁଚୁ ଦାମ, ସେଇଥିରେ ପରା ଏ ଗାଁର ସାତ ପୁରୁଷର ନଥି ସଜଡ଼ା ହେଇ ରହିଚି..

ମଧୁ ଏ ଯୋଉ ସରକାରୀ କଡ଼ି, ତା' ଭିତରେ ରହିଚି ନା, ତା'ର ପରା ଶାଗୁଣା ଆଖି । ଜମି ବାଡ଼ି ମାପରେ ଟିକିଏ ଓଲମ୍ ବିଲମ୍ ହେଇଯିବା କ'ଣ ସହଜ କଥା ? ଇଞ୍ଚେ ଜମି କୋଉଠି ରହିଯାଇ ଥେଲେ ଇଏ ପରା ଘିଡ୍‌ଘାଡ୍ କରି ଘୋଷାରି ଆଣିବ ।

୧ମ ଲୋକ : ଧନ୍ୟ କହିବ ଆମ ଏ ଓଭରସିଅର ବାବୁଙ୍କୁ । ମୁଣ୍ଡରେ ସେମିତି ମସଲା ନ ଥେଲେ, ସରକାର କ'ଣ ତୁଚ୍ଛାଟାରେ ତାଙ୍କ ହାତରେ କଡ଼ି ଧରେଇ ଦେଇଥାନ୍ତେ !

ଅମୀନ (ଆତ୍ମ ପ୍ରସାଦର ହସ ହସି) ଦିନରାତି ଏଇ କାମ ଲାଗିଚି ଆମର । ଜାଇଁଲ ଭାଇମାନେ, ଇଏ ହେଲା ଧର୍ମ ନିକିତି । ଟିକିଏ ଏପଟ ସେପଟ ହବାର ନାଇଁ...

ମଧୁ କୁଆଡ଼େ ଗଲା ଟୋକାଟା ! (ଡାକି ) ଅକ୍ଷି, ଆରେ ହେ ଅକ୍ଷି ! (କବାଟ ଫିଟାଇ ଅରକ୍ଷିତ ଦେଖା ପଡ଼ିଲେ, ଦୁଆରେ ଏତେ ଲୋକଙ୍କୁ ଦେଖି ତାଙ୍କ ଭୂଲତା କୁଂଚି ହୋଇଗଲା)

ଅରକ୍ଷିତ କଥା କ'ଣ ନନା, ସକାଳୁ ସକାଳୁ ଏକାଥରକେ ଏ ଫଉଜ ଧରି ମୋ ଦୁଆରେ ହାଜର । ଘରେ କ'ଣ କାହାର କିଛି...

ମଧୁ (ହସି) ଆରେ ନାନା... ଆମର କାହାରି କିଛି ହେଇ ନାଇଁ... ତତେ କ'ଣ ଉମା କିଛି କହିନାଇଁ ।

ଅର ଉମା ! କାଇଁ ନାଇଁତ । ଦି'ତିନି ଦିନ ହବ, ତା' ସାଙ୍ଗରେ ମୋର ଦେଖା ହେଇନାଇଁ... ମତେ କ'ଣ କହିବ ?

ମଧୁ ଆରେ ଉମା (ଚାରି ଆଡ଼କୁ ଅନାଇ ଉମାକୁ ନ ଦେଖି) ଦେଖୁଚ ଆ' କଥାକୁ ! ଭଲଲୋକଙ୍କୁ ଦାଣ୍ଡରେ ଠିଆ କରି ଆପେ କେମିତି ନାଙ୍ଗୁଡ଼ ଯାକି ଛୁ ମାରିଲାଣି ! ଛି ଛି ଛି... ଏଇଥେରେ ଏମାନେ କୁଆଡ଼େ ମାମଲତ କରିବେ...

| | |
|---|---|
| ଅମିନ | ତେମେ ଏବେ କଥାଟା ଠିକେ ଠିକେ ବୁଝେଇ ଦଉନ ନନା ! ମୁଁ ସିନା ସରକାରୀ ଲୋକ । ଡୁଟି ଉପରେ ଅଛି । ପାଟିଖୋଲି ପାରିବି ନାଇଁ... ତମର ତ... |
| ମଧୁ | ଆରେ ନାଇଁ ହୋ... ଆମେ ଯେତେହେଲେ ବାହାର ନୋକ... ଗାଁ ଭୂଇଁରେ କୋଉଠି କାହାର କ'ଣ ସୁବିଧା ଅସୁବିଧା ହେଲେ ପାଁ-ଜଣ ଡାକନ୍ତି.. ଆମୁକୁ ଯାହା ଭଲ ଦୁଶେ... ଆମେ ପଦେ ଅଧେ କହୁ... ତେମେ ତମର ମାନିଲେ ମାନ... ନହେଲେ ନାଇଁ... |
| ଅର | (ବ୍ୟଙ୍ଗ) ସେ କଥା ଖାଲି ଏ ଗାଁରେ କାଇଁକି ପାଅଖଣ୍ଡି ମୌଜାରେ ସମସ୍ତେ ଜାଣନ୍ତି ନନା... କଥାଟା କ'ଣ ମୁଁ ବୁଝିଗଲିଣି ଯେ, ଖାଲି ତମରି ମୁହଁରୁ ଶୁଣିବାକୁ ଚାହୁଁଚି... |
| ୨ୟ ଲୋକ : | ଡମାଟାତ ଆଛା ନୋକ ହସା କରେଇଲା ! ରାତି ନ ପାହୁଣୁ ଏଠିକି ଘୋଷାରି ଆଣି, ଠିକଣା ବେଳକୁ ଆପେ ଚମ୍ପଟ୍ ! ନନା, ତେମେ ତମର ବୁଝା ବୁଝି ହଉଥା । ଆମେ ଯାଉଚୁ । ଆରେ ପରିଆ ଭାଇ... |
| ୧ମ ଲୋକ : | ଦେ ଚାଲବା... ସକାଳୁ ସକାଳୁ ଚା ପାଣି ଟୋପାଏ ପେଟରେ ପଡ଼ିନାଇଁ ... ହାଇ ଉପରେ ହାଇ ଖାଲି କୁଟି ଦଉଚି... ଏଠି ଆମେ ମାମଲତ କରି ବସିଲେ କ'ଣ ଆମ ପେଟ ପୂରିବ । |
| ମଧୁ | (ବ୍ୟସ୍ତ ହୋଇ) ନାଇଁ ନାଇଁ ... ପରି.. ମୋ ବାପୁଟା ପରା... ଆଉ ଟିକିଏ ରହିଯା... ହେଇତି ନଟ... ତେମେ ସବୁ ପଳେଇ ଗଲେ, ମୁଁ ହଟହଟା ହେଇଯିବି । ଚା' କଥା ଭାବନା... ମାମଲା ତୁଟିଗଲେ, ମୁଁ ନିଜେ ତମକୁ ଚାହା ଖୁଆଇବି... ଆରେ ଏମିତି ସେମିତି ଚାହା ନୁହେଁ ବା... ଜାଣତ... ଆମ ଶାଳକ କାଳିମାଟିରେ ଦୋଘରା କରି ରହିଗଲେଣି । ସେଇ ମଝିରେ |

ମଝିରେ ଭଲ ମନ୍ଦ ଟିକେ ପଠାନ୍ତି । ଆମ କେଳା ବୋଉ ତାକୁ କାନ୍ଥ କୁରାରେ ଥୋଇ ଦେଇଥାଏ । ଗଲା ଆଇଲା ଭଲ ଲୋକଙ୍କ ପେଇଁ ଖୋଲାହଏ । ଆଜି ସେଇ ଚାହା ତମକୁ ଖୁଏଇବି । ବରଅଠା ପରି ମଇଁଷି ଦୁଧ ପଡ଼ିଥବ...ଇଞ୍ଚେ ମୋଟର ସର ଭାସୁଥବ...

ଅର ତେମେ ତେବେ ଏଠି ଏଇ ଚାହା ପୁରାଣ ବୋଲିବାକୁ ଆଇଥେଲ, ନୁହେଁ ନନା ?

ମଧୁ (ବିରକ୍ତ ହୋଇ) ଆରେ ନାଇଁ ହୋ, କେଡ଼େ ମୁସ୍‌କିଲରେ ପକେଇ ଦେଲା ଟୋକାଟା... ପରି, ମୋ ଧନଟା ପରା... ଗଲୁ ତାକୁ ଡାକି ଆଣିବୁ । ଆରେ, ଘରେ ନୁଚିଚି ବା । ଆଇଲା ତ ଆମ ପଛେ ପଛେ, ଯିବ କୁଆଡ଼େ ? ମୁଁ ଏଣେ ଠିକେ ଠିକେ କଥାଟା ଅଖିକି କହୁଚି...

୨ୟ ଲୋକ : ହଉ ମୁଁ ତାକୁ ଡାକୁଚି । (ସେଇଠୁ ବଡ଼ପାଟିରେ) ଡ... ମା... ଆରେ ହେ ଡମା... (ଡାକି ଡାକି ଦୂରକୁ ଚାଲିଗଲା)

ମଧୁ (କଅଁଳ ସ୍ୱରରେ) କଥା କ'ଣ କି ବାପ ଅଖି, ଦାସ ଘର ଆଉ ପଇଡ଼ା ଘର... ମାନେ ତୋ' ଘର ଆଉ ଡମା ଘର... ତିନିପୁରୁଷରୁ ତମର ଜମିବାଡ଼ି ନେଣ୍ଟରା ନାଗିଚି ଯେ, ଆଜିଯାଏ ଛିଡ଼ି ନାଇଁ...

ଅର ନେଣ୍ଟରା କଥା କହିଲ ଯେ ନନା... ମୁଁ ତ ସେମିତି କିଛି ଜାଣିନାଇଁ...

ମଧୁ ଗଲାବରଷ... କଥା ଭୁଲିଗଲୁ କି ପୁଅ ! କକେଇ ବଞ୍ଚିଥାଆନ୍ତି । ମଣିଷ କାହାର କିଏ କ'ଣଟା କରିପକେଇବ ? ବିପଦ ଆପଦରେ ଦିହେଁ ଯାକ କାନ୍ଧକୁ କାନ୍ଧ ଭିଡ଼ି ଠିଆହେବ । ଦେଖିବ... କେହି ତମର କିଛି ବିଗାଡ଼ି ପାରିବେ ନାଇଁ...

ଅମିନ ଥରେ କଡ଼ି ପକେଇ ମାପି ଦେଲେ କାମ ସରିଲା...

ଅର ଶୁଣ ଅମିନ ବାବୁ, ଆମ ଜମିବାଡ଼ିରେ କୋଉଠି କିଛି ଗଣ୍ଡ-ଗୋଳ ଥିଲେ ବି ଡମା ଆଉ ମୁଁ ବସି ସେ ଅଡୁଆ ତୁଟେଇ ଦବୁ । ସକାଳୁ ସକାଳୁ ମିଛୁଟାରେ ତେମେମାନେ ହଇରାଣ ହେଲ... ତେମେ ସବୁ ଯାଅ ... ମୁଁ ତାକୁ ଡାକି ପଚାରିବି...

ଡମା (ଆସି) ପଚରା ପଚରିରେ କ'ଣ ଅଛି ? କଣ୍ଟା ବାଡ଼କୁ ଫିଥର ଘୁଞ୍ଚେଇ ଘୁଞ୍ଚେଇ ଆଣି ମୋ ବାଡ଼ି ଅଧରେ ପୂରେଇଲୁଣି । ମୁଁ କାହାଁତକ ବରଦାସ୍ତ କରିବି ?

ଅର (ଆଶ୍ଚର୍ଯ୍ୟ) ଡ... ମା...

ଡମା ଆଜି ପାଁଜଣ ଭଲଲୋକ ଆସିଚନ୍ତି । ଅମିନ ବି ଅଛନ୍ତି । ମାପଚୁପ କରି ମୋ ଅରାକ ମତେ ଦେଖେଇ ଦେଇ ଯାଆନ୍ତୁ... ରାତି ପାହିଲେ ଅଶାନ୍ତି, ମତେ ଭଲ ଲାଗୁନି...

ମଧୁ ହାଁ... ଆକୁ ଯେ କହିବ ମରଦ୍ ପଣିଆ... ଆଇନି ଅଛି... କାଗଜ ପତର ଅଛି... ଏଥିପେଇଁ ଅଶାନ୍ତି ହବ କାଇଁକି ? କିଏ କାହାର ଶଏ ଷାଠିଏ ଖାଇଚି ନା ଧାରିଚି ?

ଡମା ଅମିନ ବାବୁ, ତେମେ ତମର କାମ ଆରମ୍ଭ କର ...

ଅର ରହ ବାବୁ, ତୁ ତେବେ, ଜମି ନ ମପେଇ ଛାଡିବୁ ନାଇଁ ?

ଡମା କହିଲିତ ମୋର ଅସୁବିଧା ହଉଚି...

ଅର ତୁ ଜାଣିଚୁ, ଏ ଯୋଉ କଣ୍ଟା ବାଡ... ଇଏ କେଉଁ ପୁରୁଷର । ଏବେ ବି ମୁଁ ସିଥେରେ ହାତ ଦିଏ ନାଇଁ... ମରାମତି ତୁ କରୁ... ମୁଁ ପାଟି ଫିଟାଏ ନାଇଁ... ସବୁ କଥା ପରେ ତୁ ଆଜିମତେ ନୋକହସା କଲୁ... ଶୁଣ... ମୋର ବି ଗୋଟାଏ କଥା... ଜମି ମାପ ହବ ନାଇଁ...

| | |
|---|---|
| ମଧୁ | ଇଏତ ଆଚ୍ଛା କଥା । ହଇଓ ଅମୀନ ବାବୁ, ତେମେ କ'ଣ କହୁଚ ? |
| ଅମିନ | ଦି' ପାର୍ଟିର ରାଜିରୁଜାରେ ଯୋଉଠି କଥାଟା ତୁଟୁନାଇଁ ସେଠି ଉପରୁ ଅରଡ଼ ଆଣିବାକୁ ହବ... |
| ଉମା | (ରାଗି) ମତେ ରଗାନା କହୁଚି ଅଖି ଭାଇ । ତୁ ଜାଣିଚୁ, ଥରେ ରାଗିଗଲେ ମୁଁ ହରବରହ୍ମାଙ୍କୁ ମାନିବି ନାଇଁ... |
| ଅର | କ'ଣ କରିବୁ ? ମାରିବୁ ? ମାରୁନୁ... |
| ମଧୁ | ତୁ ବାପ ବୁଝିଲା ସୁଝିଲା ପିଲା ହେଇ ଇଏ କି କାମ କରୁଛୁ ? ସରକାରୀ କାମରେ ଖଲବ ପୂରୋଉଚୁ ବେଲି ଯଦି ଉପରକୁ ରିପୋର୍ଟ୍ ହେଇଗଲା, ତେବେ ତୋର ଦଶା କ'ଣ ହବ ? ଏଁ... ବୁଝିସୁଝି କାମ କର ବାପ... ଶାସ୍ତ୍ର କହିଲା... |
| ଅର | ତମ ଶାସ୍ତ୍ର ତମ କାନିରେ ବାନ୍ଧି ରଖିଥା... ବୁଝିଲ ? ତମ କଥା କ'ଣ ମୁଁ ଜାଣିନାଇଁ ? ମେଣ୍ଢା ନଢ଼େଇ ଦେଖିବାକୁ ସକାଲୁ ସକାଲୁ ପାଗ-ପଟୁକା ଭିଡ଼ି ବାହାରି ଆଇଚ-ନାଇଁ ? |
| ମଧୁ | (ରାଗି) ଦେଖୁଥା - ଦେଖୁଥା - ତମେ ସମସ୍ତେ ସାକ୍ଷୀ ରହିଲ, ପଛକେ ଆଉ ମତେ ଦୋଷ ଦବ ନାଇଁ... ଚାଲ ଅମିନ ପୁଅ... ଟୋକା ଘୁ ଘୁ ଦେଖିଚି - ଫାନ୍ଦ ଦେଖିନେଇଁ... |
| ଅର | ଯାହୋ କଜଳ ପାତିଆ ଭଲନୋକ... |
| ମଧୁ | ଶୁଣୁଚୁଟି ଉମା... ଦି' ଜଣ ଯାକ ସଲାସୁତୁରା ହେଇ ମତେ ତେବେ ମାଡ଼ ଖୋଇବାକୁ ଏଠିକି ଡାକିଆଣି ଥେଲୁ - ନାଇଁ... ରଇଥାରେ ପୁଅ - ତୁ ଏ ମଧୁ ମିଶରକୁ ଚିହ୍ନି ନୋଉଁ... |
| ଉମା | ମନ ହଉଚି ଗୋଟାଏ ମୁଥରେ ତୋ ଦାନ୍ତ ଦି'ଭାରି ଝାଡ଼ି ଦିଅନ୍ତି... |

ଅର — କିଏ ତତେ ମନା କରୁଚି ? ଆଗ ତୋ ଚଣ୍ଡୀ-ଚାମୁଣ୍ଡାଙ୍କୁ ବିଦାକର... ତା' ପରେ ତୁ ରହିଲୁ.. ମୁଁ ରହିଲି.. ଆମର ବୁଝା-ବୁଝି ହବା ନାଇଁ ।

ଡମା — (ଦାନ୍ତ ରଗଡ଼ି ଉହୁଙ୍କି ଯାଇ) ତତେ ତ ମୁଁ... (ସମବେତ ସ୍ୱର)- ହାଁ ହାଁ ଇଏ କ'ଣ ? ଇଏ କ'ଣ ହଉଚି ? ହଇରେ ଡମା, ଏଠି ଫୌଦାରୀ କରିବୁ ନା କ'ଣ ? ଯା, ଘରକୁ ଯା...

ମଧୁ — (ଚିହାଇ) ଆଉ ସିଏ ଯେମିତି ଆକୁ ଛିଗୁଲୋଉଚି, କୋଉ ମର୍ଦ୍ଦପିଲା ସମ୍ଭାଳି ହେଇ ରହିବ ତେମେ କହୁନ... ମୋ ରକତ ପରା ଖାଲି ଟକମକ ଟକମକ ହୋଇ ଫୁଟୁଚି...

ଡମା — (କ୍ରୋଧରେ) ଆଜି ତୋ'ର ଦିନେ କି ମୋର ଦିନେ... ଦେଖିବି କୋଉ ବାପ ଆସି ତୋ' ପିଠିରେ...

(ଏତିକି ବେଳେ ଦୂରରୁ ପାଟିତୁଣ୍ଡ ଶୁଣାଗଲା) ଦଉଡ଼ି ଆସ, ଦଉଡ଼ିଆସ... ଗଲା, ଗଲା, ବୁଡ଼ିଗଲା... ରଘୁଆ... ଡମା ପୁଅ ବୁଡ଼ିଯାଉଚି... ଧାଇଁ ପଡ଼, ଧାଇଁ ପଡ଼...

ଡମା — (ବିକଳରେ) ମୋ ସଂସାର ସରିଗଲା, ଅଖି ଭାଇରେ ଦଉଡ଼ିଆ... (ଚାଲ, ଚାଲ, ଦଉଡ଼ି ଚାଲ... ପାଟି ତୁଣ୍ଡ ଧୀରେ ଧୀରେ ଦୂରେଇ ଗଲା...)

ମଧୁ — କେଡେବଡ଼ ଦାଉ'ଟା ହାତରୁ ଖସିଗଲାରେ... (ଦୀର୍ଘଶ୍ୱାସ ପକାଇ) ହଉ... ଏକା ମାଘକେ ଶୀତ ଯାଉ ନାଇଁ ଯେ...

# ୭ମ ଦୃଶ୍ୟ

(ବାରିପଟ ପୋଖରୀ ଘାଟ... ପାହାଚରେ ଶୋଇଚି ରଘୁ... ଡମାର ପୁଅ । ଗୋଟାଯାକ ଓଦା । ଆଖି ବୁଜିଚି... ତା' ପାଖରେ ବସିଚି ବୁଲା... ଅରଖିତର ପୁଅ । ସେ ବି ଓଦା ହୋଇଛି... ତା' ଓଠ ଦିଓଟି ଥରୁଚି... ଓଦା ଲୁଗାରେ ଠିଆ ହେଇଚି ମାଳ ଅପା... ଅରଖିତ ବି ଓଦାହେଇଚି... କିଛି ଲୋକ ଠିଆ ହୋଇ ପାଟି ତୁଣ୍ଡ କରୁଛନ୍ତି । ଡମା ମୁହଁରୁ କଥା ବାହାରୁ ନାଇଁ)

ଅରଖିତ  ଭଗବାନ୍ ବଡନୋକ... ଡମାଟା ତ ଆଜି ତିନିପାଞ୍ଚିରୁ ଯାଉଥେଲା... ଯାହାହଉ, ତେମେମାନେ ଏଥର ଯାଆ... ଆମୁକୁ ବାଟ ଛାଡ... ରଘୁକୁ ଆମେ ଘରକୁ ନଉ... ବୁଲାବୋଉ, ତେମେ ବୋହୂକୁ ଘରକୁ ନେଇ ଯା... ଗରମ ଦୁଧ ଗିଲାସେ ଆମଘରୁ ନେଇ ଆସ ରଘୁକୁ ସାଙ୍ଗେ ସାଙ୍ଗେ ପିଆଇ ଦେଲେ ସିଏ ଚେଙ୍ଗା ହେଇ ଯିବ...

୧ମ ଲୋକ : ମାଳ ଅପା, ରଘୁଆଟା କେମିତି...

ମାଳ  କେମିତି ମୁଁ କୋଉ ଦେଖିଚି ନା ଜାଣିଚି... ବୁଲା ପାଟି ଶୁଣି ଦଉଡ଼ି ଆସିଲା ବେଳକୁ ରଘୁ ଉବେଇ ଟୁବେଇ ହଉଚି । ଆଉ ବୁଲା ତାକୁ ଧରି କୂଳ ଆଡ଼କୁ ଟାଣୁଚି...

୨ୟ ଲୋକ : ଦି'ଜଣ ଯାକ ଠେଲାପେଲା ହଉ ହଉ ରଘୁଆ ପାଣିକି ଖସି ପଡ଼ିଲା, ନାଇଁରେ ବୁଲା ?

ବୁଲା  ବୋଉ ମତେ ନେମ୍ବୁ ତୋଳିବାକୁ ପଠେଇଲା... ଗଛ ପାଖରେ ପହଞ୍ଚିଲା ବେଳୁକୁ ରଘୁ ଉବେଇ ଟୁବେଇ ହଉଚି... ମୁଁ ତ ସେଇଠୁ ପାଟିଟାଏ କରିଦେଇ ପାଣିକି ଡ଼େଇଁ ପଡ଼ିଲି... ଆମେ ଠେଲାପେଲା ହେଲୁ କେତେବେଳେ ?

ମାଳ ଗାଈ ମୁହଁରେ କୁଟା କେରାଏ ପକେଇବାକୁ ଆସି ମୁଁ ବୁଲା ପାଟି ଶୁଣିଲି... ମୋର ତ ହାଲୁକ ଶୁଖିଗଲା...

୧ମ ଲୋକ : ଯା'ହଉ... ବୁଲାଟା ଦେଖିଲା ବେଳି, ଡମା ଠାକିଗଲା... ନଇଲେ ଆଜିତ ତା' ସଂସାର ଉଛନ୍ନ ହେଇଯାଇଥାଆନ୍ତା... ଅପା, ତୁ ଯେମିତି ହେଲେ ଆଜି ନୀଳକଣ୍ଠେଶୋରଙ୍କ ପାଖକୁ ଭୋଗ ବଟେଇ ଦବୁ...

୨ୟ ଲୋକ : କଥାଟା ତ କ'ଣ ଜଣା ପଇଲା ନାଇଁ ... ରଘୁଟା ଉଠୁ...

ଅର କହିଲି ପରା ତେମେ ମାନେ ଯାଆ ବେଲି... ରଘୁ କୁଆଡ଼େ ପଳୋଉ ନାଇଁ... ହାଉଲେ ହାଉଲେ ସବୁ ଶୁଣିବ... ବାଟ ଛାଡ ପବନ ଟିକିଏ ଆସୁ... ପିଲାଟା ପାଣି ଗୁରା ପିଇଯାଇ ଆକତା ମାକତା ହେଇଯାଇଁଚି...

ରାଧା (ଅରଖିତକୁ) ନିଅ ଦୁଧ ଟୋପାକ ଧର... ତା' ଦାନ୍ତ ପଡ଼ିଯାଇଚି କି କ'ଣ... ଚାମୁଚିରେ ଆଗ ଖୋଲି ଦେଇ, ତାକୁ ଟିକିଏ ଟିକିଏ କରି ପିଆଇ ଦିଅ... ନ ହେଲେ ଉଠ, ମତେ ବାଟ ଛାଡ ମୁଁ ପିଆଇବି ।

ଅର (ଲୋକମାନେ ତଥାପି ଠିଆ ହେଇଥିବାର ଦେଖି) ଆରେ ତେମେମାନେ ମଣିଷ ନା ଆଉ କ'ଣ ? ଦେଖୁଚ ଏଠି ପିଲାଟାର ଜୀବନ ଉପରେ ପଡିଚି... ତମୁକୁ ସବୁ ତାମସା ନାଗିଚି, ନାଇଁ... ଯାଉଚନା...

୧ମ ଲୋକ : ହେଇ ରଘୁଆ ଅନେଇଲାଣି... ଚାଲରେ ସବୁ, ପିଲାଟା ହାଲିଆ ହେଇ ପଡ଼ିଚି... ଟିକିଏ ଥକା ମାରୁ, ପଛକୁ ଆସି ସବୁ ଶୁଣିବା ନାଇଁ କି... (କୋଳାହଳ ଧୀରେ ଧୀରେ ଦୂରେଇ ଗଲା)

ରାଧା ତମେ ଏଥର ଉଠ । ଦୁଧ ତାଟିଆଟା ମତେ ଦିଅ...

ଅର — ଆଉ ତୁ ସେମିତି ଭକୁଆ ମେତି ବସିଚୁ କାଇଁକି ଉମା ? ଭଗବାନ ବଡ଼ନୋକ...

ରଘୁ — (କ୍ଷୀଣସ୍ୱରରେ) ବା... ପା...

ଉମା — (ଅଶ୍ରୁରୁଦ୍ଧ କଣ୍ଠରେ) ମୋ, ବାପାଟା ଲୋ... (କାନ୍ଦିପକାଇଲା)

ଅର — ଇଏ କ'ଣ ଉ଼ମା ? ତୁ ଏମିତି ପିଲାଙ୍କ ମେତି ହଉଚୁ କ'ଣ ? ତୁ ଏମିତି ହେଲେ ମାଇପିମାନଙ୍କୁ ସମ୍ଭାଳିବ କିଏ ?

ଉମା — (ସେମିତି) ଅଖିଭାଇ... ତୁ ମତେ ଦଶଯୋଡା ମାର... ସବୁ ଦୋଷ ମୋର । ମୁଁ ସେ ମଧୁ ମିଶର କଥାରେ ପଡ଼ି ତତେ ବାଟରେ ବସାଇବାକୁ ଯାଉଥେଲି... ସେଇ ପାପରେ ମୋ ରଘୁଆ..

ଅର — ତୁନିହ, ତୁ ତୁନି ହେଲୁ... ଆରେ ମାରିଲାବାଲା ଜଣେ, ଆଉ ତାରିଲା ବାଲା ବି ଜଣେ । କୋଉ ମଣିଷ କାହାର କ'ଣ କରି ପକେଇବରେ !

ମାଳ — ଉମା ଯେ, ତା' ଭୁଲ୍ ବୁଝିପାରିଚି, ସେତିକିରେ ମୁଁ ଖୁସି । ଆରେ ବାଇଆ... ବାପ-ଅଜା ସାତପୁରୁଷରୁ ପଇଡାଘର ଆଉ ଦାସ ଘର ଏକାମନ ଏକାପ୍ରାଣ ହେଇ ଚଳି ଆସୁଚନି... ତୁ ପରବୁଦ୍ଧିରେ ପଡି ତାକୁ ଭାଙ୍ଗିବାକୁ ଯାଉଥେଲୁ । ଜାଇଁଲୁରେ, ଉପରେ ଭଗବାନ ବୋଲି ଜଣେ ଅଛି । ସବୁ ଦେଖୁଚି, ସବୁ କରୁଚି... ତତେ ଖାଲି ତା' କରାମତି ଟିକିଏ ଦେଖେଇ ଦେଲା...

ଉମା — ଅପା...

ମାଳ — ମୁଁ ତୋ' ବଡ଼ ଭଉଣୀ - ଏକା ନାହି ଦିଖଣ୍ଡ... ମତେ ଯେତେବେଳେ ଏ ଘରୁ ବିଦା କଲ, ସେତେବେଳେ ବରଧରା ହେଇ କିଏ ଯାଇଥେଲା ? କୋଉଠି ଥିଲୁ ତୁ ! ଅଖି କି ମୁଁ ତୋଠୁ ତ କେବେ ଅଲଗା କରି ଦେଖିନାଇଁ...

ଅର		ଥାଉ ଅପା, ପଛ କଥା ଘାଣ୍ଟି ଲାଭ କ'ଣ ?

ମାଳ		ମଣିଷ କ'ଣ ମଣିଷକୁ ଅସାର ? ଆଜି ଯଦି ପିଲାଚାଖଣ୍ଡକ ଆଖିରେ ପଡ଼ିନଥାନ୍ତା, ତେବେ ଅନୀ ପରିଡ଼ା ବଉଁଶ ବୁଡ଼ିଯାଇ ଥାନ୍ତା...

ରାଧା		ଥାଉ ଅପା, ଆଉ ସେ ଅମଙ୍ଗୁଳିଆ କଥାଗୁଡ଼ା ତୁଣ୍ଡରେ ଧରନା... ଶୁଣୁଚ... ତେମେ ତମାକୁ ନେଇ ଯା... ମୁଁ ରଘୁକୁ କାଖେଇ ଘରେ ଛାଡ଼ି ଦେଇ ଯାଉଚି... ଆଲୋ ନେତ...

(ନେତର ସୁକୁ ସୁକୁ କାନ୍ଦ ଶୁଣାଗଲା) ଆଲୋ କାନ୍ଦୁଚୁ - କାଇଁକି, ଫୁଲେଇଟା... ଚାଲ, ଘରକୁ ଚାଲ ।

ମାଳ		ତୁ ରଘୁକୁ ଧର, ମୁଁ ନେତିକି ଧରୁଚି ।

ନେତ		(ଚାପା ସ୍ୱରରେ) ନାଇଁ ଅପା, ତେମେ ଚାଲ... ମୁଁ ଯାଉଚି... ମୋର କ'ଣ ହେଇଚି କି ?

ରଘୁ		ବୋଉ, ତୁ ମୋ ପାଖରେ ବସିଥା ...

ରାଧା		ନାଇଁ, ଏଠି ଆଉ କେହି ରହିବେ ନାଇଁ - ଖରା ପଡ଼ିଲାଣି । ଆ, ମୁଁ ତତେ କାଖାଏଁ... (ଅର୍ଖିତକୁ) ଆଉ ଶୁଣ, ଏମାନେ ଆଜି ସମତେ ଆମ ସାଙ୍ଗରେ ଖାଇବେ... ମୁଁ ରଘୁକୁ ଛାଡିଦେଇ ଯାଉଚି... ତେମେ ଟିକିଏ ମାଛଫାଛ...

ମାଳ		ଭାତ ଦି'ଟା କ'ଣ ମୁଁ ଫୁଟେଇ ଦେଇ ପାରିବିନାଇଁ ଯେ, ତୁ ଏକୁଟିଆ ଏତେ ହଇରାଣ ହେଇ...

ରାଧା		ଖାଇବାଟା ବଡ଼ କଥା ନୁହେଁ ଅପା...ପାଖରେ ବସିଲେ, ମନଟା ମୁକୁଳା ହେଇଯାଏ । ଯେତେ ଅଳିଆ ଅସ୍କରା ଜମିଥାଏ ସବୁ ଧୋଇ ହେଇଯାଏ... କୋଉ ପୁରୁଷରୁ ଏଠି ଦାସବଉଁଶ ଆଉ ପରିଡା ବଉଁଶ ଚାଳକୁ ଚାଳ ମିଶାଇ ବସା ବାନ୍ଧିଥିଲେ ।

ସେତେବେଳେ ହଏତ ଜଣକ ଦିହରୁ ଝାଳ ବୋହୁଥିଲେ, ଆରକ ଦିହରୁ ରକତ ବୋହୁଥେଲା... ଶଶୁରଙ୍କ ଅମଳରେ ବି ଏ ଦି' ପରିବାରର ସମ୍ପରକ ମୁଁ ଦେଖିଚି । ଆମରି ଅମଳରେ ସେତକ ସୁଅ ମୁହଁରେ ଯାଉଥେଲା... ଜଗନ୍ନାଥଙ୍କ କଇଲାଣରୁ ଭଙ୍ଗା ହାଡ଼ ପୁଣି ଯୋଡ଼ି ହେଇଯାଇଚି... ଯାହା ଯୋଉଠି ବିଗିଡି ଯାଇଥେଲା, ସବୁ ସଜାଡ଼ି ହେଇଯାଇଚି । ତେମେ ଯଦି ଆସିନଥାନ୍ତ ନା ଅପା - କ'ଣ ଯେ ହେଇଥାଆନ୍ତା...

ମାଳ (ମାଡ଼ିବସି) ଠାକୁର ଆଖିଟେକି ଅନେଇଲାରୁ ଏସବୁ ହେଲା ନା... ମୁଁ କିବା ଲୋକ ! ନା- ଇଏ ଡମା ଯେମିତି ମାତିଥେଲା - ସିଏ କୋଉ ମୋ କଥା ଶୁଣିଥାଆନ୍ତା !

ରାଧା (ଚାରି ଆଡ଼କୁ ଅନାଇ) ହେଇତି ଅପା, କଥା ଯେମିତି ଆଉ ଛଅକାନ ନହଏ... ଡମା ଯେମିତି ଖଣ୍ଡିଗୁଣିଆ ଲୋକ, ତେମେତ ଜାଣିଚ । ବିଚରା ନେତିଟା ହଲାପଟା ହବ ଶେଷକୁ...

ମାଳ ଡମା ବୁଝୁ ନଥେଲା... ଏବେ କଥାଟା ହାଉଲେ ହାଉଲେ ମରମକୁ ଭେଦିବଣି ଯେ... ଯିବା ଆଗରୁ ମୁଁ ନିଜେ ତାକୁ ସବୁ କହି ଦେଇଯିବି... ଫାଶୀ ଦବ ତ ମତେ ଦଉ... ହେଇ ହେଇ ଛ'ମାସ ବର୍ଷକେ ଥରେ ଜନମମାଟି ମାଡୁଚି... ସେ ବାଟରେ କଣ୍ଟା ପଡ଼ିଯିବ... ମୋର କୋଉ ବାପମା ଏଠି ଅଛନ୍ତିଯେ, ମୋର ଜୁ ଖଟିବ ! (ଉଦାସ ହୋଇଗଲେ)

ନେତ ଏ କଥା କାଇଁକି କହୁଚ ଅପା, ତମ ଘର ତମ ଦୁଆର । ତମ ଭାଇ-ପୁତୁରା... ତମକୁ ଏଠିକି ଆସିବାକୁ କିଏ ମନା କରିବ ? ଯୋଉ ବାଟ ସିଏ ଧରିଥେଲେ, ଭିଟା ମାଟି ଉଛନ୍ନ ହେଇଥାଆନ୍ତା... ତମେ ସେଥିରୁ ଉଦ୍ଧାର କରିଚ... ମଣିଷ ହେଇଥେଲେ ବଳେ ବୁଝିବେ ଯେ...

ରାଧା	ଅପା, ଏ ଘରର ଏରୁଣ୍ଡିବନ୍ଧରେ ଗୋଡ଼ଦେଇ ତମକୁ ବଡ଼ ଭଉଣୀ ବୋଲି ଜାଣିଚି... ମାନିଚି ବି... ମୋର କୋଉଠି କ'ଣ ଭୁଲ୍ ରହିଗଲା ... ଜାଣିନାଇଁ... ତମ ଗୋଡ଼ତଳେ ପଡୁଚି... ତମର ମନ ତଳେ କଣେ ଥାନ ଦବାକୁ କେବେହେଲେ ମନା କରିବ ନାଇଁ...

ମାଳ	(କାନ୍ଦିପକେଇ) ମତେ ଝାଡ଼ିଝୁଡ଼ି ଦିଅ । ତମର ସବୁ ରୋଗ ବଇରାଗ ନେଇ ମୁଁ ପଛେ ମଶାଣିକି ଯାଏଁ । ପିଲାଛୁଆ ନେଇ ତେମେମାନେ ଯୁଗ ରାଇଜ କର... ଦାସ ଘର ପଇଡ଼ା ଘର ନାଁ ରଖ...

ନେତ	ତମେ କିଛି କହିବା ଦରକାର ନାହିଁ । ମୁଁ ସବୁ କଥା ଖୋଲି କହିଦେବି... ମାରିଲେ ମାରନ୍ତୁ, ତାରିଲେ ତାରନ୍ତୁ...

ମାଳ	କେହି କିଛି କହିବା ଦରକାର ନାହିଁ । ମୁଁ ଯାହା କରିଚି, ସେଥିପେଇଁ ଯାହା ହବ ମୁଁ ଭୋଗିବି । ପିଲା ଦି'ଟାକୁ ସକାଳଟାରୁ ପୋଖରୀର ଏ କାଳୁଆ ପାଣିରେ ଭିଜେଇ ସୁଆଙ୍ଗ କରିବାକୁ ମତେ କ'ଣ ଭଲ ନାଗୁଥେଲା ? ହେଲେ, ତମେମାନେ ସାକ୍ଷୀ । ବାଟ ତ ଆଉ କିଛି ନଥେଲା...

ରାଧା	ଧନ୍ୟ କହିବ ତମକୁ । ରଘୁ ବୁଡ଼ିଯିବା କଥାଟା ରଟେଇ ଦେଇ ନଥେଲେ, ତମା ଯେମିତି ମଣିଷ ସିଏ କ'ଣ ସହଜେ ବାଟକୁ ଆସି ଥାଆନ୍ତେ ।

ନେତ	ମୋର ତ ଖାଲି ଛାତି ଧଡ଼ପଡ଼ ହଉଥାଏ... କ'ଣ କେତେବେଳେ ହେଇଯିବ ଯଦି...

ମାଳ	ଆଲୋ, ମୋ ମାଆ ସବୁବେଳେ କହୁଥାଏ -
''ସାହାସେ ମରି ସାହାସେ ତରି...
ସାହାସେ ଘର ଦୁଆର କରି ।'' ମାଇକିନିଆ ଜନମ ପରା ।

ପାନରୁ ଚୂନ ଖସିଲେ ମୁଣ୍ଡକାଟ । ଡରିଡରି ଜୀବନ ଯାଏ... ମୁଁ କ'ଣ କମ୍ ଭୋଗିଚି ।

ରାଧା ଭାଗ୍ୟକୁ ତମ ମୁଣ୍ଡକୁ ବୁଦ୍ଧିଟା ପଇଟିଲା...

ମାଳ ପିଲା ଦି'ଟାବି ବହୁତ କରିଛନ୍ତି । ଯେମିତି ଶିଖେଇ ଦେଲି... ସେମିତି କରିଗଲେ... ଦେଖିଲଟି ରଘୁକୁ । ଆଖିବୁଜି କେମିତି ଜୀବନ ନଥେଲା ଭଳି ପଡ଼ିଥାଏ...

ନେତ ବଡ଼ଙ୍କ କଳିରୁ ସେମାନେ ବି ତ ଏଇ କେଇଦିନ କମ୍ ଦହଗଞ୍ଜ ହେଇନାହାନ୍ତି...

ମାଳ ଚାଲ ଚାଲ ଘରକୁ ଚାଲ... ଡେରି ହେଲେ ସେମାନେ କ'ଣ ଭାବିବେ... ମନେ ରଖିଥବ... ଉପରେ ଭଗବାନ ଅଛନ୍ତି । ମଣିଷ କାହାର କିଏ କ'ଣଟା କରିପକେଇବ ? ବିପଦ ଆପଦରେ ଦିହେଁ ଯାକ କାନ୍ଧକୁ କାନ୍ଧ ଭିଡ଼ି ଠିଆହେବ । ଦେଖିବ... କେହି ତମର କିଛି ବିଗାଡ଼ି ପାରିବେ ନାଇଁ...

ରାଧା ସାଇପଡ଼ିଶାରେ ଘର କରିଚୁ ଯେତେବେଳେ ଏତକତ କରିବାକୁ ପଡ଼ିବ... ନହେଲେ ଆଉ ପଡ଼ୋଶୀ କ'ଣ ?

ନେତ ଆସ ଅପା, ଘରକୁ ଆସ...

ରାଧା ନାଇଁ ଅପା ମୋ ସାଙ୍ଗରେ ଆସନ୍ତୁ । ସକାଳୁ ତ ଏଇ ପାଲା ନାଗିଚି... ରୋଷେଇ ବାସର ଠିକ୍ ଠିକଣା ନାଇଁ... ଅପା ବସିଲେ ମୁଁ ସବୁ କରିଦେବି ଯେ, ଅପା, ଚାଲ...

ମାଳ ଚାଲେ ଲୋ...

